# ଉତ୍କଳ ଭ୍ରମଣଂ ।



ଏ,ଚ.

ଢଙ୍କଳଚର ଉତ୍କଳମୂର୍ଖେଣ

ବିରଚିତଂ ।

ଉତ୍ପତ୍ସ୍ୟତେଽସ୍ତି ମମ କୋଽପି ସମାନଧର୍ମା ।
ଅବଶ୍ୟ ପଢ଼ିବେ ଯାହା ଲେଖିଗଲେ ଶର୍ମା ॥



ତୃତୀୟ ସସ୍କରଣ ।




**Printed by V. Kar.**

THE UTKAL SAHITYA PRESS,

Cuttack.

**1916.**


ମୂଲ୍ୟ ୪ ୦ ।



# ଉତ୍କଳ ଭ୍ରମଣଂ ।



## ଶାରଳା ବନ୍ଦନା ।



ବନ୍ଦଇ ଶାରଳା ମା ଗୋ ଝଙ୍କଡ଼ବାସିନି ।
ବୀଣାବଜାଇନ ଦେବ ଅଞ୍ଚଳଦାୟିନି ।
ବିଦ୍ୟାର ଭଣ୍ଡାର ଅଟେ ତୁମ୍ଭ ପୀଠ ସ୍ଥାନ,
ବାଞ୍ଛାକଳ୍ପ ଫଳ ଫଳ ତହିଁ ଅବଧାନ ।
ଦୟା କରି ବସ ମାତ ମୋ ମୁଣ୍ଡରେ ବେଳେ,
ଲେଖିବି କବିତାମାଳା, ଗାଇବେ ଉତ୍କଳେ ।
ତୁମ୍ଭର ଅଭ୍ୟାସ କବି-କଣ୍ଠେ ବସିବାର,
ମୋ ପ୍ରତି ସେପରି କରି ନାହିଁ ଅତ୍ୟାଚାର ।
କଣ୍ଠରେ ବସିଲେ ହୋଇଯିବ ଯେ ହାଉଡ଼ା,
କେପରି ଲେଖିବ ଆଉ ଗ୍ରନ୍ଥ ଦୁଇ ପୁଡ଼ା ?

ଉଲ୍ଲାସେ ବସିବ ମାତ ମୋ ମୁଣ୍ଡରେ ଧୀରେ,
ଝୁଙ୍କି ନ ପଡ଼ିବ ମୁଣ୍ଡ ଯେମନ୍ତ ଭାରରେ !
ମୋ ପେଟରେ ବିଦ୍ୟା କିଛି ନାହିଁ ଗୋ ଶାରଦେ,
ଅଙ୍ଗ ଭାର ହୋଇ ପଡ ଯାଇ ପାର ଢଳେ !
ତେତେବେଳେ ତୁମ ଗୋଡ଼ ହାତ ଗଲେ ଭାଙ୍ଗି,
ମୋର ଦୋଷ ନ ଧରିବ କଜ୍ଜ୍ୱଳ-ଅପାଙ୍ଗି !
ଏ କଥାରୁ ବୁଝିନଅ କେଡ଼େ ମୋର ଜ୍ଞାନ,
ତେଣୁ ଆଗୁଁ କରି ଦେଉଅଛି ସାବଧାନ ।
ଲେଖେଁ ମୁଁ କବିତା ମାତ ଦୟା କରି ବେଳେ,
ଟେଣାଟେଣି କରି ବହି ପଢ଼ିବେ ସକଳେ ।
କେ ହସିବ, କେ ରାଗିବ ବହି ପଢ଼ି ସାରି,
କେହି ଦେବ ଗାଳି କରି ମନ ଊଣା ଭାରି ।

—।।।—

ଉତ୍କଳ ପବିତ୍ର ଭୂମି ଭାରତ ମଧ୍ୟରେ,
କରନ୍ତି ଏଥିରେ ବାସ ପୁଣ୍ୟବନ୍ତ ନରେ ।
ଅସଂଖ୍ୟ ଅସଂଖ୍ୟ ଯାତ୍ରି ଆସୁଛନ୍ତି ଧାଇଁ
ଏହି ମହା ପୁଣ୍ୟକ୍ଷେତ୍ର ଦେଖିବାରପାଇଁ ।
ଭାରତର ସର୍ବ ଦେଶେ ଏମନ୍ତ ପ୍ରଚାର,
ପବିତ୍ର ଉତ୍କଳ ଭୂମି ଅଟେ ସ୍ୱର୍ଗଦ୍ୱାର ।
ପ୍ରକୃତି ଯେମନ୍ତ ଶୋଭା ଏଠାରେ ମେଲିଛି,
ଏମନ୍ତ ସୌନ୍ଦର୍ଯ୍ୟରାଶି ଭାରତେ କାହିଁଛି ?
ପବିତ୍ରସଲିଳା ନଦୀ ବନ ଉପବନ,
ସ୍ଥାନେ ସ୍ଥାନେ ଶୋଭାପାଏଁ ନନ୍ଦନକାନନ ।
ଯେ ଲୋକ ନ ଜାଣେ ଓଡ଼ିଶାର କାରିଗିରି,
ଦେଖୁ ସେ ଭୁବନେଶ୍ୱର, ଦେଖୁ ଖଣ୍ଡଗିରି ।

କେତେ କୀର୍ତ୍ତି ଲୋପ କରି ପାରି ନାହିଁ କାଳ !
ଜଣାଯାଏ ପାଣିମାପ ଦେଖି ପଦ୍ମନାଳ ।
ଅଇଲେ ଶିବଜୀ ଥରେ ଦେଖିବେ ଉତ୍କଳ,
ଅଛି କି ନା ଏହା ପୂର୍ବ ପରି ଅବିକଳ । *
ମାତ୍ର ଅହା ଏହୁ ଦେଶ ହୋଇ ଖଣ୍ଡ ଖଣ୍ଡ
ସକଳ ସୌନ୍ଦର୍ଯ୍ୟ ହୋଇଅଛି ଲଣ୍ଡଭଣ୍ଡ !
ଦକ୍ଷିଣଟା କମାମାନେ ବସିଛନ୍ତି ମାଡ଼ି,
ଉତ୍ତରଟା ଗଲାଣି ତ ବଙ୍ଗାଳିଙ୍କ ହାଡ଼ ।
ପଶ୍ଚିମଦିଗର କଥା ବୋଇଲେ ନ ସରେ,
ପଡ଼ିଲାଣି ମରହଟ୍ଟା ପଶ୍ଚିମା ଭାଗରେ ।
ଯାହା କରିଗଲେ ଉଡ଼ବରନ ସାହେବ,
ରକ୍ତ ଅକ୍ଷରରେ ଇତିହାସେ ଲେଖା ହେବ ।
ସେ ଧନ ସାହେବ କହିଗଲେ କଟକରେ,
କଛୁ କାର୍ଯ୍ୟ ହେବ ନାହିଁ ତାହାଙ୍କ ନାମରେ ।
ମାତ୍ର ମୁହିଁ ତାଙ୍କ କୀର୍ତ୍ତି ଗାଇବ ନିତାନ୍ତ,
ଓଡ଼ିଆ ଭାଷାର ହାନି ଦେଇଛନ୍ତି ହାତ !
ଗଦବ ଓଡ଼ିଆ କହି ନ ଜାଣନ୍ତି କଥା,
ଲୁନହୋଇ ରହିଗଲେ ପୋତି ତଳେ ମଥା ।
ଗୃହଅଙ୍କେ ତାଙ୍କ ଯଶ ହେଉଛି ବିକାଶ,
ଓଡ଼ିଆମାନଙ୍କ କଲି କଲେ ସର୍ବନାଶ ।
କେତେ କାମ କରିଗଲେ ବଙ୍ଗଳାଦେଶରେ,
ସମସ୍ତେ ତାଳନ୍ତି ତେଲ ତେଲିଆ ମୁଣ୍ଡରେ !

---

୨ * ଶିବଜୀ ଭୁବନେଶ୍ୱରଠାରେ କହିଥିଲେ, ଏ ଦେଶ ଦେବତାମାନଙ୍କର ବାସଯୋଗ୍ୟ, ମନୁଷ୍ୟ ସଙ୍କାଶ ନୁହେ ।

Backward ମୁସଲମାନ ପାଇବେ ଚାକର,
ହାଃ ହାଃ ! ଓଡ଼ିଆମାନେ forward ଭାର !
ବାଙ୍କ ଉନଗୋଠା କଲ୍ଲା ଓଡ଼ିଶା ଗୌରବ,
ତହିଁ ମଧ୍ୟ ସବୁ ସରଯାଇଛି ବିଭବ ।
ମାରୁଆଡ଼ି କାପୋଡ଼ିଆ ଭୋଜପୁରି ମୁଦ
ବାଣିଜ୍ୟ ବେପାର ଦ୍ୱାର ରଖିଛନ୍ତି ମୁଦ୍ଦ ।
ଓଡ଼ିଆ କାଟିବେ ଧାନ ଚଷି ଚଷି ମାଟି,
ମାଡ଼ଙ୍କ ଖାଇବେ, ରସ ତହୁଁ ଗୁଜୁରାଟି ।
ହାକିମ ଓକିଲ ସବୁ ଅଟନ୍ତି ବଦେଶୀ,
ଡାକ୍ତର କିରାଣୀଟି ନୁହେ ମଧ୍ୟ ଦେଶୀ ।
ଜମିଦାରମାନଙ୍କର ଚଳୁଥିଲା ହାତ,
ଅସୁଅଛି ବନ୍ଦୋବସ୍ତ ସରଯିବ ଭାତ !
ଅଡ଼ିଅଛି ରେଲଗାଡ଼ି ଚଢ଼ି ଦେଇ ଭଡ଼ା,
ଚାକର ବାକର ପାଶେ ହୁଅ ନାହିଁ ଛିଡ଼ା !
କି କହିବୁଁ କାହାଠାରେ, କିଏ ନେବ ବୁଝି ?
ଭୁନ ହୋଇ ପଡ଼ିଥିବୁଁ କପାଳକୁ ପୂଜି !
ଆଉ ସେ କଥାରେ କିଛି ନାହିଁ ପ୍ରୟୋଜନ,
ଦେଖେଁ ଏଥି ଛନ୍ତି କେଉଁ କେଉଁ ମହାଜନ ।

କୋଟି ତାର ମଧ୍ୟେ ଯେସନ୍ତେ ଶୋଭାପାଏ ଚନ୍ଦ୍ର,
ଓଡ଼ିଶାମଣ୍ଡଳେ ମହାରାଜ ରାମଚନ୍ଦ୍ର ।
ଧନେ ମାନେ ଜାଡ଼କୁଳେ ରୂପେ କ୍ଷମତାରେ
ଏତେ ଗୁଣ ପୂର୍ଣ୍ଣ କାହିଁ ଅଛି ଏକାଧାରେ ?
ନବୀନ ବୟସ ଏଣେ ଅତୁଲ ସମ୍ପତ୍ତି,
ନାଟ ଖେଳ ଦେଖ କାଟୁଥାନ୍ତି ଦିନ ରାତି ।

ସେ ସକଳ କଥା କିଛି ନ ପଚାରଇ ମନେ,
ଧନ ଗୃହ ଲାଗିଅଛ ଶାସ୍ତ୍ର ଅଧ୍ୟୟନେ ।
ଏତେ ପଢ଼ ନାହିଁ ବାପା ବସି ଗୃହସାର ,
କୋମଳ ଅଙ୍ଗକୁ ଆହା ବାଧିଯିବ ପର !
ମନ ମଧ୍ୟେ ଦୃଢ଼ରୂପେ ବାନ୍ଧିଥିଲ ଆଶା,
ଘୁଞ୍ଚାଇବ ତୁମ୍ଭେ ମାତୃଭାଷାର ଦୁର୍ଦ୍ଦଶା ।
ଆପଣ ତ ହେଲ ଏବେ ଇଂରେଜୀପଢ଼ୁଆ,
ମାତୃଭାଷା କହିବାକୁ ଲାଗିବ ଅଡ଼ୁଆ !
ନାହିଁ ନାହିଁ ମହାରାଜ, ଭଲ ହେଉ ନାହିଁ,
କିଛି ହେଲେ କର ମାତୃଭାଷା ରକ୍ଷାପାଇଁ ।
ସଞ୍ଚ ସଞ୍ଚ ଦେଇଥିଲ ଆଗେ ଟଙ୍କା ଥୋକେ,
ଟପକରି ଗିଳିଦେଲେ ପାଖଥିବା ଲୋକେ !
ଢେର ଦିନୁଁ ଓଡ଼ିଶାରେ ପେଟା ଅଛି ଢୋଲ;
ବାଲେଶ୍ୱରେ ପିଟାଇଛ ରାମଚନ୍ଦ୍ର ଢୋଲ ।
ଆହୁରି ପୁଞ୍ଜେ କ ଛଟା ଅଛି ଦରକାର,
କ୍ରମେ କ୍ରମେ କରିଯିବ ବାପା ଖବରଦାର !
ଆଶା ଅଛି ଓଡ଼ିଆକୁ ଅନାଇବ ବାରେ,
ଅବଶ୍ୟ କୀରଣ୍ଡ ବାନା ଉଡ଼ିବ ସଂସାରେ ।
ରହୁ ତୁମ୍ଭ ଚିତ୍ତ ଭଗବାନଙ୍କ ଚରଣେ,
ପ୍ରବନ୍ଧ ବିଶେଷେ ପ୍ରତିପାଳ ପ୍ରଜାଗଣେ ।
ଦୀର୍ଘଜୀବୀ ହୁଅ ବାପା କରୁଛି କାମନା,
କରନ୍ତୁ ଈଶ୍ୱର ତୁମ୍ଭ ମଙ୍ଗଳସାଧନା ।

ହେ ବୈକୁଣ୍ଠନାଥ ଦେ ରାଜା ବାହାଦୁର !
ସତେ ସତେ ତୁମ୍ଭେ ଜଣେ ଅଟ ବାହାଦୁର ।

କରିବାକୁ ଦେଶ ଉପକାର ଖରପଣେ
ନ ଥିଲା ନ ହେବ ନାହିଁ ତୁମ୍ଭ ପର ଜଣେ ।
ତୁମ୍ଭର ଅକ୍ଷୟ୍ୟ କୀର୍ତ୍ତି ରାଜା ବାହାଦୁର,
ବାଲେଶ୍ୱର ମଧ୍ୟେ ଷୋଳନେଉଳା ପୁଷ୍କର ।
ହେବ ଏହା ଉପକାରୀ ସୌନ୍ଦର୍ଯ୍ୟର ଖଣି,
ମୋହିତ ହୃଦୟରେ କର ଭ୍ରମଣି ।
ଧନ୍ୟ ଧନ୍ୟ ଧନ୍ୟ ତୁମ୍ଭ ନାମ ପ୍ରତିଷ୍ଠାଣ,
ଦୀର୍ଘଜୀବୀ ହୁଅ ରାଜା କରୁଛ କଲ୍ୟାଣ ।
ତୁମ୍ଭର ମହତକାର୍ଯ୍ୟ ସକାଶେ ବୈକୁଣ୍ଠ,
ରଖିବ ଜଗତେ କୀର୍ତ୍ତି, ଲଭିବ ବୈକୁଣ୍ଠ ।

ଧାଡ଼ି ଧାଡ଼ି ଯାଉଛନ୍ତି ଯାତ୍ରିଦଳ ବହୁ,
ସତ୍ୟାବର୍ତ୍ତ କେତେଦୂରେ କଥା କହୁ କହୁ ।
ନୁହେ ତ ଏ ତୀର୍ଥସ୍ଥାନ ସୁନହଟ ଗ୍ରାମ,
କହିଁ ଚୂର୍ଣ୍ଣ ହୋଇଛନ୍ତି ଲୋକ ଗୃହଧାମ ?
କେହୁ କହେ ଦାଲ୍ ଅଭର୍ ଘୂ ଦେଓ ଭାଇ,
ରାମକକେ ଅଶେଷ ଚାଲ ଭୋଗ ଗୃଇ ।
ଅତିଥିମାନଙ୍କ ପାଇଁ ଅବାରିତ ଦ୍ୱାର,
ଦନ ରାତି ଲାଗି ରହିଅଛି କାରବାର ।
ସତ୍ୟାବର୍ତ୍ତ ମେଳ ବସିଛନ୍ତି ଦୁଇଜଣ,
ଦୁଇ ଭାଇ ରାଜାରାମ ଗଙ୍ଗାନାରାୟଣ ।
ଧନ୍ୟ ଦୁଇ ଭାଇ ତୁମ୍ଭମାନଙ୍କର ମନ,
ପ୍ରକୃତ ପାଳୁଛ ହିନ୍ଦୁ ଧର୍ମ ସନାତନ ।

ଭାଇ ଭଗବାନ ଦାସେ କରେଁ ନମସ୍କାର,
କର କର ସତ୍ୟଧର୍ମ ମହିମା ପ୍ରଚାର ।
ଲାଗି ପଡ଼ିଥାଅ ଭାଇ ନ ହୁଅ ନିରାଶ,
ଦିନେ ହେଲେ ହେବ ସତ୍ୟ ମହିମା ପ୍ରକାଶ ।

ଚୈତନ୍ୟ ଚରଣ ଦେ ପଢ଼ିଲ ତ ବଳି,
ଦୁଇଖଣ୍ଡ କରୁଥିଲ ଗୋଟାଏ କଦଳୀ ।
ଲୋକେ ବୋଲୁଥିଲେ ତୁମ୍ଭେ ନିତାନ୍ତ କୃପଣ,
ପୋଷସ୍ତି ଖୋଜାଇ କଲୁ ଗଲ ପଣ ପଣ ।

ହରଣ ସର୍କାର ଦେବ ଧନ୍ୟବାଦ ଥରେ,
ଧାଇଁବୁଲେ ଦିନ ରାତି ପବ୍ଲିକ୍ କାର୍ଯ୍ୟରେ ।
ହେଉ ବା ନ ହେଉ ସତ୍ତ୍ୱେ ଭାଇ ତୁମ୍ଭ ନାମ,
ଲାଗି ପଡ଼ି କରୁଥାଅ ଦୁନିଆର କାମ ।

ଭଗବାନ ସାର୍ଦ୍ଧଜୀବୀ କରନ୍ତୁ ଫକୀରୁ, *
ପାଇବ ଯେ ବାଲେଶ୍ୱର ଗୋଟିଏ ଲୋକକୁ ।
ପୁଣେ ଯଣ୍ଡି ଛୋଟସ୍ପୁ ର ଯାହା ଶାସ୍ତ୍ରକଥା,
ଜଣାଗଲା ଗଙ୍ଗାନାରାୟଣ ଧାର୍ମିକତା ।
ହେବ ଫକୀବାବୁ ଜଣେ ଦେଶର ହିତୈଷୀ,
ମହକ ଉଠଇ ଦୁଇ ପତ୍ରରୁ ତୁଳସୀ ।
ଭୁଲ ନାହିଁ ବାପା ତୁମ୍ଭେ କାହା ପୁଅ ନାତି,
ସେମାନଙ୍କଠାରୁ ବଳି ପଡ଼ୁ ତୁମ୍ଭ ଖ୍ୟାତି ।
ବାପକା ଲଡ଼କା ପୁଣି ସିପାହିକା ଘୋଡ଼ା,
ଅବଶ୍ୟ ନିଶାଣି ରହିଥାଏ ଥୋଡ଼ା ଥୋଡ଼ା ।

* ଶ୍ରୀଯୁକ୍ତ ବାବୁ ରାଧାଚରଣ ଦାସଙ୍କର ଡାକନାମ ଫକୀ ବାବୁ ।

ମାନଙ୍କ ଏପରି ଅଛି ଚଳାଚଳ କଥା,
ସ୍ୱନାମ-ପୁରୁଷ ଧନ୍ୟ ଅଟେ ସାର୍ଥକତା !

ହେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ସାଆନ୍ତେ,
କେତେଥର ବସି ମୁହିଁ ଭାଳଇ ଏକାନ୍ତେ ।
ପଚାଶ ବରଷ କାଳ ଲେଖୁଅଛ ବସି,
ଶିଳ ଶିଳପୁଅ ହେଲେ ଯାଆନ୍ତାଣି ଘଷି !
ପାଚିଲାଣି ହଣ୍ଡ ସର ଅସ୍ତୁଛି ଜୀବିକା,
ଏ ଉତ୍ତାରେ କେ ଲେଖିବ ସମ୍ବାଦବାହିକା ?

କାହିଁ ଗଲେ ନାହିଁ ଶିବନାରଣ ନାୟକ,
ଥିଲ ଜଣେ ନାମଜାଦା ଓଡ଼ିଆ ଲେଖକ ।
ତୁମ୍ଭର କବିତାପମାନ ସବୁ ଇସ୍କୁଲରେ
ଚଳୁଥିଲା ସବୁ କ୍ଲାସ ସବୁ ବିଭାଗରେ ।
ଛାଡ଼ି ବସିଲଣି ଲେଖାଲେଖିର ସମ୍ବନ୍ଧ,
ଗୋଟାଏ ଗୋଟାଏ ଭୁଛା ଦେଖୁଛି ପ୍ରବନ୍ଧ ।
ଏହା ନୁହେ କଭ୍ର ତୁମ୍ଭ ଉପଯୁକ୍ତ କର୍ମ,
ପୁନଶ୍ଚ ଆରମ୍ଭ କର ମାତୃପୂଜା ଧର୍ମ ।
ତୁମ୍ଭ ଶବ୍ଦାର୍ଥ ଅଭିଧାନ ଗଲା କାହିଁ,
ସେକେଣ୍ଡ ଏଡ଼ିସନ ଛପା ନ ହୁଏ କପାଇଁ ?

ଅହେ ଚନ୍ଦ୍ର ମହାରଣେ ହେଉ ହେଉ ହେଉ,
ମେଲି ଦିଅ ଆଉ ଥରେ କବିତାର ଢେଉ ।
ଛପାଇବେ ରାମଚନ୍ଦ୍ର, ଚନ୍ଦ୍ରା କ ହେ ଆଉ,
ନେବ ମାଗି ଟଙ୍କା ମୁଠେ ଠିକ୍ କି ଦେବ ବାଉ ।

ହରଦାସେ ଉପବାସେ ନାହିଁ ତୁମ୍ଭେ କଷ୍ଟ,
ତେବେ କିଆଁ କଥା ନାହିଁ, ମୁହଁଟା ଶୁଖିଛୁ !
କପାଳରେ ନାହିଁ ତୁମ୍ଭ ସେକଣ୍ଡ ମାଷ୍ଟରୀ,
କେଉଁ ଦେବ ପାଡ଼ିଲେ ଡଙ୍କା ମୁଣ୍ଡକୋଡ଼ି ମରି ?
ଚିନ୍ତା ନାହିଁ, ଦନେ ପାଇ ପାର ବଡ଼ପଦ,
ଓଡ଼ିଆ ଇଂରେଜୀ ମିଶା ଝାଡ଼ ଦୁଇପଦ ।

ଅହେ ସୋର ଗ୍ରାମ କରେଁ ତୁମ୍ଭଙ୍କୁ ସମ୍ମାନ,
ଅର୍ଦ୍ଧବାଣ ସଦାଶିବ ନନ୍ଦ ଜନ୍ମସ୍ଥାନ ।
ଜନ୍ମିଛନ୍ତି ରଧାନାଥ ଯୋଗ୍ୟ ପୁତ୍ରମଣି,
ଅଟେ କି ଏ ଗ୍ରାମ ଗୋଟା ମରକତଖଣି ?

ପଣ୍ଡୁମିଆଁ କବରକୁ କରୁଛି ସଲାମ,
ଯାଇଛ ମର୍ଯ୍ୟାଦା ରଖି ଧର୍ମ ଇସ୍‌ଲାମ ।
ଅହେ ମିଆଁ ତୁମ୍ଭର ତ ହେଲା ଇନ୍ତ୍ରକାଲ,
କେ ବୁଝିବ ମୁସାଫେର ଦରବେଶ ହାଲ ?

ଅହେ ଗଣପତ୍ତି ମୋତେ ଦେଖାଇଛ ଆଶା,
ଅଗ୍ରାହ୍ୟ କରିବ ନାହିଁ ତୁମ୍ଭେ ମାତୃଭାଷା ।
ପଢ଼ିଅଛ ଇଂରେଜୀରେ ଲଜକ୍ ସାଏନସ୍ ,
ତୁମ୍ଭ ଲେଖାଗୁଡ଼ାକ ତେଣୁ ମୋତେ ଲାଗେ ବେଶ୍ ।

ଥିଲେ ଜଣେ ଭୋଲାନାଥ ପାରୁଥିଲେ ଲେଖି,
ମନ ଖୁସି ହେଉଥିଲା ତାହା ଲେଖା ଦେଖି ।
ବଙ୍ଗଳାରେ ବୁଲି ବୁଲି ପଡ଼ିଲେଣି ଥକି,
ଭାଇ ଆଉ ଶୁଣ ଗୃହ ଧାଡ଼ି ଲେଖିବ କି ?

ଯାଏଁ ଯାଜପୁର ବାଟେ, ସେ ତ ପୀଠସ୍ଥାନ,
ଅବଶ୍ୟ କରିବ କେହି ମୋତେ ସନମାନ ।
ଖ୍ରମ ଖ୍ରମ ଖ୍ରମ ଖ୍ରମ ପଡିଲଣି ଥକା,
ଧାଡିଅ ବାମ୍ଭଣଗଣ ସଙ୍ଗେ ବକା ବକା ।
ଅଜ୍ଞ ଭାଇ ଶୁଣିବାରେ ନାହିଁ ମୋର କାମ
ଜୈଦତ୍ତୁ ଛପନ ପୁରୁଷଙ୍କ ନାମ ଧାମ ।
ନାଅ ନନା ଟଙ୍କାଟିଏ କର ନାହିଁ ଡ଼ୁର,
ଆପଣା ପୋଥିରେ ଦସ୍ତା କର ଦଅ ଜୋର ।
ଦଣ୍ଡବତ ଦଣ୍ଡବତ ଦଶାପନ ଧାଡ !
କେଉଁଆଡ଼େ ପଳାଇବ କହିଦିଅ ବାଟ ।

ମନେ ପଡିଗଲା ଫେର ଆସି ଅଧବୁରେ,
ପାଙ୍ଗ ମା ଥିଲା ପରା ଏହି ଯାଜପୁରେ ।
ପାଲି ଗୁଣ୍ଡି କରି ଯାଇଅଛୁ ଅନ୍ଧକାର,
ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ମହିମା ତାହାର ।
କାହାକୁ ଉପମା ଦେବ ତାକୁ ଜ୍ଞାନପଣେ,
ହେବ ନଉଚନ, ଗାଲିଲିଓ ପରି ଜଣେ ।
ଜଗତଦୁର୍ଲଭ ଧାନ, ତହିଁ ଗୁଣ୍ଡି ପୁଣି,
ଅମୃତ ଫୋପାଡି ଦେବେ ଦେବତାଏ ଶୁଣି ।

ଜୁହାରୁଛି ଅହେ କେନ୍ଦ୍ରାପଡ଼ା ବାଟେ ବାଟେ,
ରାଧାଶ୍ୟାମ ନରେନ୍ଦ୍ର କି ଥିଲା ଏହିଠାରେ ?
ଧନ୍ୟ ଧର୍ମପରାୟଣ ଅତିଥିବତ୍ସଳ,
ତୁମ୍ଭ କୀର୍ତ୍ତି ପୂରିଅଛି ଓଡ଼ଶାମଣ୍ଡଳ ।
ତ୍ୟାଗ କରି ଯାଇଅଛ ଅନିତ୍ୟ ଶରୀର,
ମାତ୍ର ତୁମ୍ଭ ଯଶରାଶି ରହିଥିବ ଚିର ।

ତାହାଙ୍କ ଅଦ୍ଭୁତ୍ୟ ବଧି ଥିଲା ଚମତ୍କାର,
ଲୋକ ଲୋକ ବାନ୍ଧୁଅଙ୍କ କରନ୍ତି ସତ୍କାର ।

ଓଡ଼ିଶାର ରାଜଧାନୀ ଏହି ତ କଟକ,
ବହୁତ ଅଛନ୍ତି ଏଠି ଧନୀ ମାନୀ ଲୋକ ।
ଦେଖେଁ ତାହା ତାହା କାର୍ଯ୍ୟକଲାପ ବିଚାର,
ସାଧୁ ନାମ ଧରୁ ଦେଉ ଶରୀର ସବର ।

ହେ ନନ୍ଦକିଶୋର ସର୍ବ ଗୁଣରେ ନିପୁଣ,
ଗାଇବାକୁ ତୁମ୍ଭ ଯଶ ନାହିଁ ମୋର ଗୁଣ ।
ଗଡ଼ଜାତ ରାଜାଙ୍କର ରଖିବାକୁ ମାନ,
କରିବ ମୁଁ କାହା ସଙ୍ଗେ ତୁମ୍ଭଙ୍କୁ ସମାନ ?
ଅନୁଗତ ଲୋକ ରକ୍ଷା କରିବା କାରଣେ
ନ ଦେଖିଲୁ ଆଜଯାଏ ତୁମ୍ଭ ପରି ଜଣେ ।
ନ ମରିବ ସାପ ପୁଣି ନ ଭାଙ୍ଗିବ ବାଡ଼,
ଏପରି କୌଶଳ କେବା ଜାଣେ ତୁମ୍ଭ ଛଡ଼ ?
ସିଦ୍ଧଲ୍ଲ ସରବେଣ୍ଟ ଏଣ୍ଡ ପଲ୍ଲଟି ଏଜେଣ୍ଟ,
ଜୟ ଜୟ ଜୟ ଓଡ଼ିଶାର Monument !
ଅକାଳରେ ଦେହ ଛାଡ଼ି ଚାଲିଗଲ ଭାଇ,
ଜ୍ଞାତି ବନ୍ଧୁ ଅନୁଗତ ଲୋକଙ୍କୁ କନ୍ଦାଇ !

ଧନ୍ୟ ରାଧାନାଥ ତୁମ୍ଭ ଜନମ ସଫଳ,
ଯାପି ରହିଅଛୁ କୀର୍ତ୍ତି ଓଡ଼ିଶାମଣ୍ଡଳ ।
କେତେ ତ ଅଛନ୍ତି ରଜା କେତେ ଧନବନ୍ତ,
କେଉଁ ଲୋକ ଅଛୁ ତୁମ୍ଭ ପରି କୀର୍ତ୍ତିମନ୍ତ ?

ବୁଲି ଆସ ଓଡ଼ିଶାର ସବୁ ଗ୍ରାମଯାକ,
କାହିଁ ପଡ଼ ନାହିଁ ରାଧାନାଥ ନାମ ଡାକ ?
ମାଡ଼ ବସିଅଛ ତୁମ୍ଭେ ଶିକ୍ଷା ଶୀର୍ଷସ୍ଥାନ,
ଏହା କି ଓଡ଼ିଶା ପକ୍ଷେ ଅଳପ ସମ୍ମାନ ?
ଯେ ଯା କହୁ ମାତ୍ର ମୁହିଁ କହେ ବରାବର,
ଓଡ଼ିଶାର ଭାଗ୍ୟ ଗୁଣେ ହେବ ଇନ୍‌ସ୍ପେକ୍ଟର ।
ଜନନୀର ଯୋଗ୍ୟପୁତ୍ର ଅଟ ତୁମ୍ଭେ ଭାଇ,
ଦେଇଅଛ ଭଲ ମାଳେ ଗଳାରେ ପିନ୍ଧାଇ ।
ଧନ ମାନ ପଦ ସବୁ କାଳର ଅଧୀନ,
'ପାର୍ବତୀ' 'କେଦାରଗୌରୀ' ଥିବ ଚିରଦିନ ।

ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ହି. ରେଭେନ୍‌ସା !
ଚିରକାଳ ତୁମ୍ଭ କୀର୍ତ୍ତି ଗାଇବ ଓଡ଼ିଶା ।
କେତେ କମିଶନ ଆସିଥିଲେ ଓଡ଼ିଶାକୁ,
ମାତ୍ର କେତେଜଣ ଲୋକ ଚିହ୍ନନ୍ତି ତାହାକୁ ?
ଯାଉନ୍ତୁ ସାହେବମାନେ ସଲାମ୍ ସଲାମ୍ !
ଲମ୍ବା ଲମ୍ବା ଚିଠି ଲେଖି ନେଇ ଲେକ୍‌ନାମ ।
ହେ ସାହେବମାନେ କିଆଁ ବଢ଼ାଇବ ମଥା
ଓଡ଼ିଆପୁଅଙ୍କ ପାଇଁ କହ ଗୃହିକଥା ?
ହେ ରେଭେନ୍‌ସା ପୁଣ୍ୟଶ୍ଳୋକ ଧର୍ମପରାୟଣ,
ଧନ୍ୟ ମୁହିଁ ତୁମ୍ଭ ନାମ କଲି ଉଚ୍ଚାରଣ ।
ଓଡ଼ିଶା ମା ବାପ କାହିଁ ତୁମ୍ଭ ପରି ଜଣେ ?
ଓଡ଼ିଶା ସକାଶେ ଲାଗିଥିଲ ପ୍ରାଣପଣେ ।
ପରପାଇଁ କରିବାର ଆତ୍ମବିସର୍ଜନ,
ଦେଖାଇ ଯାଇଛ ତୁମ୍ଭେ ସେଥି ନିଦର୍ଶନ ।

ବାଳିକା ସ୍କୁଲ, ଜେନେରେଲ ହସ୍ପିଟାଲ,
ଶ୍ରୀନବାନ୍ଧ ବନ୍ଦର, ହାଇଁ ଲେବେଲ କେନାଲ,
ନର୍ମାଲ ଇସ୍କୁଲ, ସର୍ଭେ ଇସ୍କୁଲ ଇତ୍ୟାଦି
ତୁମ୍ଭର ଏ କାର୍ଯ୍ୟ ସନମଠ ସଙ୍କବାଦୀ ।
ରେଭେନ୍ସା କଲେଜ କୀର୍ତ୍ତି ସବୁଦିନେ ଥିବ,
ଜୟ ଜୟ ଜୟ ଜୟ ରେଭେନ୍‌ସା ସାହେବ ।

ଥିଲ ଜଣେ ବାମ୍ପ ଅଣା ଥିଲ ତାହାଠାରେ,
ମାନକ ପାରିଲ ନାହିଁ ରହି ଓଡ଼ିଶାରେ ।
ଅବଶ୍ୟ ସେ କରିଛନ୍ତି କିଛି କିଛି କାମ,
ଢେର ଢେର ଲୋକେ ଗାଉଥିବେ ତାଙ୍କ ନାମ ।

ହେ ଗୌରୀଶଙ୍କର ଧନ୍ୟ ତୁମ୍ଭର ସାହସ,
ଦୀପିକା ଲେଖୁଛ ବସି ତେରଶ ବରଷ ।
ନ ମାନି ବିପଦ ବାଧା ନ ଚାହିଁ ଦେହକୁ,
ମନ ପ୍ରାଣ ସମରପି ପାଳିଛ ବ୍ରତକୁ ।
ଦେଖି ଦେଖି ଢେର ଦିନ ଜାଣିଛୁ ବିଶେଷ,
ଅଟ ତୁମ୍ଭେ ଜଣେ man of business ।

ହେ ରାମଶଙ୍କର ତୁମ୍ଭର ମାନୁଛୁ ମନକୁ,
ହୋଇ ପାର ଭାଇ ତୁମ୍ଭେ ଗଉଁଷୀ ପନ୍ଥକୁ ।
ଓଡ଼ିଆ ନାଟକ ଆଉ ନଭେଲର ଲେଖା,
ପ୍ରଥମରେ ତୁମ୍ଭଠାରେ ଗଲ ଯିନା ଦେଖା ।
ଏତେ ଯେ ଲେଖିଲ ତାହା କେ ଯାଉଛୁ ଦେଖି,
ହେଉ ହେଉ ଅଖି ବୁଜି ଯାଉଥାଏ ଲେଖି ।

ମୂର୍ତ୍ତି ପିଷ୍ଟି ଦାଏ ଚଲେ କଥା ଦେଖି ଭାଇ,
ନ ଦେଖିଲ କେହୁ ଥରେ ଅଦ୍ରିଗ୍ ଙ୍କ ମାଇ !

ହେ ମଧୁସୂଦନ ବୃହିରଙ୍ଗ ମନୁଷ୍ୟ,
ବସ୍ଥାଅ ଭାଇ ନେଇ ମୋଦର ଅଯୂଷ ।
ଆଦର୍ଶ ମନୁଷ୍ୟ ଯେବେ ଦେଖିବାକୁ ଗୃଥ୍ୟ,
ଧାଇଁ ଯାଇ ଥରେ ଦେଖି ଅସ ମଧୁ ଗ୍ରୁଓ ।
ନିର୍ମଳ ପବିତ୍ର ମନ ନିର୍ମଳ ସ୍ୱଭାବ,
ମୂର୍ତ୍ତିମନ୍ତ ହୋଇଅଛୁ ଯେସ୍ନେ ଧର୍ମ ଭାବ ।
ସୁଶୀଲତା ପବିତ୍ରତା ଶାନ୍ତ ଏକାଧାରେ
ଯାଅ ଯାଅ ଦେଖ ମଧୁ ଗ୍ରୁଓ ଦେବାଃରେ ।
ପ୍ରଶାନ୍ତ ବାସନ୍ତୀ ଶାନ୍ତ ପାବଦ ମାଧୁରୀ,
ସମସ୍ତେ ଅଛନ୍ତି ମଧୁ ଗ୍ରୁଓ ଘରେ ପୂରି ।
ଜସ୍ମନ୍ତ ସମାନେ ପୃଷ ଶୁଦ୍ଧପୂତମନା,
ଦେଖି ଦେଖି ଦାଏ ପିନା ମନକୁ ସାନ୍ତ୍ୱନା ।
ବନ୍ଦେ ଗ୍ରୁଓ ଘରେ ବ୍ରହ୍ମସଙ୍ଗୀତ-ଭାରତୀ,
ପବିତ୍ରହୃଦୟା ଯଥା ରେବା ସରସ୍ୱତୀ ।
ମାନଙ୍କ କଥାଏ ମନେ ପଡ଼େ ବେଳେ ବେଳେ,
କେତେ ଥର ମନେ କଲି ପଗ୍ରୁଦିବ ବେଳେ ।
ଓଡ଼ିଆନରେ ହେବ ମଧୁ ଅଦ୍ଧାଇ ପଣ୍ଡିତ,
ତୃପ୍ତିର ରଖିନ୍ତୁ ଏତେ ଗୁଣ ପେଟେ ପୂରି ।

ଅସ Mr. M. S. କୁରେଁ Shake hand,
ଉଜ୍ଜ୍ୱଳ ହୋଇଛୁ ତୁମ୍ଭ ଯୋଗେ Motherland.

ଭଲ ବେଳେ କରିଅଛ ଓକିଲତି ପାସ୍ ,
ସାବାସ୍ ସାବାସ୍ ଭାଇ, ସାବାସ୍ ସାବାସ୍ !
କେତେଥର ଭାଇ ଶୁଣିଅଛୁ ତୁମ୍ଭ plead,
ଯାର ପାଇଁ ବଡ଼ ବଡ଼ Barrister defeat.
ଅନେକ ଭାଇ M. S. ରଖି ଯାଅ ଯଶ,
ଦୁଇ ଗ୍ରିର ଓଡିଆଙ୍କୁ କର ଯା ମଣଷ ।
ତୁମ୍ଭେ ତ ଅଳ୍ପଅ ପ୍ରାପ୍ତ ମୂର୍ଦ୍ଧ ଅନ୍ଧାରଅ,
କିନ୍ତୁ ଭାଇ ଦୁଇ ଜଣ ଜାତିରେ ଓଡ଼ିଆ ।

ଦେଖିଲି ଗୋଟାଏ କଥା, ବିଲାତରେ ବୁଲି
ଆପଣା ଦେଶର କଥା ଯାଇ ନାହିଁ ଭୁଲି ।
ସେଦିନ ପିଆଇ ମୋତେ ଏକ କପ୍ ଚା,
ଦେଖାଇଲ କେତେ ଚିଜ ସାବାସ୍ ଭାଇ ବାଃ !
ମନ ମାନି ଗଲା ସବୁ ଦେଖି ସେ ଉତ୍ସାହ,
କଟକର କାରିଗରି ଦ୍ରବ୍ୟ ନାନା ଜାତି,
ରୁପା ତାରକସି କାମ, ଶିଙ୍ଗର ପାନିଆ,
ଅବଶ୍ୟ କହିବ ଏହା ସବୁ ନୂଆ ନୂଆ ।
ମାତ୍ର Co-operative ଯେବେ ରଖି ଯିବ,
ଯୁଗେ ଯୁଗେ ଓଡିଶାରେ ତୁମ୍ଭ ନାମ ଥିବ ।

ନରେନ୍ଦ୍ର ବସି ଭାବୁଥାଅ ମହାମତି
କି ଉପାୟେ ହେବ ଜନ୍ମଭୂମିର ଉନ୍ନତି ।
ଜାତି ଗଣନ୍ତ୍ରରେ ଯୁଗେ କାଳ ଗଲା ବହି,
ବୁଝିଲିଣି ତୁମ୍ଭ ସଙ୍ଗେ କଥାବାର୍ତ୍ତା କହି,
ଦେହ-ଧନ-ମନ-ପ୍ରାଣ ତୁମ୍ଭର ସମସ୍ତ
ମାତୃଭୂମି କଲ୍ୟାଣରେ କରିଅଛ ନ୍ୟସ୍ତ ।

ବହୁଲକ୍ଷ ଟଙ୍କା ତୁମ୍ଭେ କଲ ଉପାର୍ଜନ,
ହୋଇ ପାରଥାନ୍ତ ଗୋଟେ ଭାରି ମହାଜନ ।
ରାଜ୍ୟଟାଏ କିଣିବାର ତୁମ୍ଭଠାରେ ଘର,
ଏକା ଲକ୍ଷ୍ୟ କାହିଁ ହେବ ଦେଶ ଉପକାର ।
ଉତ୍କଳର ସମ୍ମିଳନୀ ବାଞ୍ଛାକଲ୍ପତରୁ,
ବାହାରିଛି ଏହା ମନ୍ତ୍ରି ତୁମ୍ଭର ମୁଖରୁ ।
ସବୁବେଳେ ଦେଖେଁ ତୁମ୍ଭେ ଭାବୁ ଥାଅଁ ବସି,
ମନେ ଦେଶଚିନ୍ତା ମାବ ହେ ଯୋଗୀ ତପସ୍ୱୀ !
ବୋଲ ତାକୁ କେହୁ ଯାଣେ ଟଳେ ଭଲଲୋକ,
ଦେଶ କଥା ଭାଲ ପାଞ୍ଚ ମିନଟ ମାଳକ ।
ପାଞ୍ଚଜଣ ମଧ୍ୟେ କିମ୍ବା ରାଜଦରବାରେ
ଲାଗିଥାଅ ମାତୃଭୂମି ଉନ୍ନତି କଥାରେ ।
ଉନ୍ନତି ଚେଷ୍ଟାରେ ତୁମ୍ଭେ ଉତ୍କଳ ଦେଶକୁ
ପଚିଶ ବରଷ ପେଲି ଦେଇଛ ଆଗକୁ ।
ପତିତ ଉତ୍କଳ ଦେଶ ଉଦ୍ଧାର କାରଣ
ଅବତାରରୂପେ ଜନ୍ମିଅଛ ନାରାୟଣ ।

ଅହେ ଶଟି ବାବୁ କଲ ଦକ୍ଷିଣ ଭ୍ରମଣ,
ମାନକ ପଢ଼ିଲେ ତାକୁ ବୋଲ କେତେଜଣ !
ନ ପଢ଼ନ୍ତୁ କେହୁ କାଲୁ ଯାହା ଗଲ ଲେଖି,
ତାହା ସଙ୍ଗେ ଅଉ କୀର୍ତ୍ତି ତୁଳନା ହେବ କି ?

ଶ୍ରୀର ଧନ ଭାବ ଭାବ ବୁଝିଛି ମନରେ,
ଲୋକ ସଭ ଲୋକଟାଏ ବିଶ୍ୱନାଥ କରେ ।
ସଭାସମିତିରେ ଯେବେ ହେବ ତାଙ୍କୁ ଘତ,
ବନ୍ଧୁ ତାହା ବଢ଼ି ପାଣି ପରି ଯିବ ମାଡ଼ି ।

ବାଟୁଲ ବାଜବ ନାହିଁ କଥା ଗଲେ କହି,
ଉବୁଡ଼ାଂ ମାଠିଆ ମୁହଁ ପାଣି ପଇ ବହି ।
ମାସ୍ତିକ ପତ୍ରିକା ହେଲା ଦେଶର ଗୌରବ,
ଉତ୍କଳ ଦେଶରେ ଥିଲା ତା ନାମ ଗାରବ ।
ମାସିକ ପତ୍ରିକା ହେବ ସ୍ୱରୂପ ଦେଖାଇ
ପାଣିର ଫୁଟୁକା ଗଲେ ପାଣିରେ ଉଭାଇ ।
କୋଡ଼ିଏ ବରଷ କାଳ ପାଖ ଲାଗି ଲାଗି,
ସାହିତ୍ୟ ପ୍ରତ୍ନର ପାଇଁ ପଡ଼ ଅନ୍ଧ ଲାଗି ।,
ଧନ ନାହିଁ, ସାହା ନାହିଁ, ତୁଚ୍ଛ ସାହସରେ
ଧନ ଗଢ ଲାଗି ଧନ୍ଦି ଅଛ ସାହିତ୍ୟରେ ।
ଦେଶେ ଲୁଚ ରହିଥିଲେ କେତେ କବ ଜ୍ଞାନୀ,
ସାହିତ୍ୟ ଅଣିଲା ତାଙ୍କୁ ବାହାରକୁ ଟାଣି ।
ଛାଡ଼ିଲ ପୈତୃକ ବତ୍ତି ଧର୍ମରକ୍ଷାପାଇଁ,
ଛାଡ଼ କଥା, ଧର୍ମ କର୍ମ ମୁଁ ତ ବୁଝେଁ ନାହିଁ ।
ଦେଶ ଉପକାର ଅର୍ଥେ ସଢାଂ ହ ଜୀବନ,
ବୈଦ୍ୟନାଥ ଦେଖାଇଲେ ଯଫା ନିଦର୍ଶନ ।

ହର ହର ହର ହର ଗମ ଗମ ଗମ,
ଛି ଛି ମନେ ପଡଗଲା ଆଜ କାହା ନାମ !
ପାଇ ଗଲ ରମ୍ଭା ଭଡ ଖାଇଛ ସକାଳେ,
କୋହଲେ ଉପାଯ ଥିଲା ନଷ୍ଟସ୍ତ କପାଳେ ।
ବାଡରେ ବଧାଡା ଯେବେ ନ କାଟିବ ପଡ୍ଡ;
କେଉଁରୂପେ ହେଲେ କାଟି ଦେବ ଶୋଇପଡ଼ ।
କ୍ଷମା କର ବସିଅଛ ଘର ଘର ଟଙ୍କା,
ପଇଟାଣି ଦେବାବେଳେ ମୁହଁ କରେ ବଙ୍କା ।

ଆହୁର ଶୁଣିଛୁ ଦେଢ଼େ ଖବରକାଗଜ,
ମାଗ ଦାମ୍ ଦେବା କଥା ବଡ଼ ଅସହଜ ।
ଜଣେ ଏଡିଟର କହୁଅଛୁ ଗୁପତରେ,
ପଇସାଏ ପାଇ ନାହୁଁ ବାର ବରଷରେ ।

ପଡ଼ିଛୁ ପୁରୁଷୋତ୍ତମ ରଥ କେଉଁ କୋଣେ,
ପଢ଼େ ସେ ସଂସ୍କୃତ ଶ୍ଳୋକ କିଏ ଅବା ଶୁଣେ ?
ନ ଶୁଣୁ ପଛକେ କେହୁ ନାହୁଁ କିଛି ଦକା,
ଶୁଣିଲେ ବାମଣ୍ଡା ରଜା ଫିଙ୍ଗି ଦେବେ ଟଙ୍କା ।
ଦହି ଚୁଡ଼ା ଖାଇ ପାଅ ପଇସା ଯୋଡ଼ାଏ,
ରଜା ଦେବେ ଟଙ୍କା ଏକାବେଳକେ ଗୁଡ଼ାଏ ।
ଗାଉଥାଅ ଗାଉଥାଅ ତୁନ ହୁଅ ନାହୁଁ,
ନେଖି ଗଲେ ତାଳପତ୍ର ଗୁଡ଼ା ଯିବ କାହୁଁ ?

ଧନ୍ୟ ହେ ବଢ଼ାଧରଲାଲ କଲ ଭଲ କାମ,
ଗୀତା ପଙ୍କେ ସଙ୍ଗେ ଗାଉଥିବ ତୁମ୍ଭ ନାମ ।
ହେ ବିଶଦ ବ୍ୟାଖ୍ୟା ପଢ଼ି ପଣ୍ଡିତେ ମନକୁ,
ସରଲ କି ଆଉ କିଛି ରହୁଛି ପଛକୁ ?

ଅହେ ସ୍ୱର୍ଗ ଜଗନ୍ନାଥ ତୁମ୍ଭ ଭେଜ୍‌ସନାରି
ଯେତେବେଳେ ଦେଖେଁ ମନ ଝୁରି ହୁଏ ଭାରି ।
ସୂନ୍ନ ବଡ଼ ହୁଇ କାପି ଦେଇଛ ଛପାଇ,
ଏତିକି ହେଲା କି ଆଉ ଦେଖାଇବ ଭାଇ ?

ଶୁଣିଥିଲି ଗତ ହେଲୁ ପାତ ବର୍ଷ ପ୍ରାପ୍ତ,
କଟକରେ ଅଛୁ ଜଣେ ଯୋଗେଶଚନ୍ଦ୍ର ରାୟ ।

ବୋଟାନି ଓ କେମିଷ୍ଟ୍ରିରେ ଭାରି ତାର Knoledge,
କାମ କରେ ପ୍ରଫେସର କଟକ କଲେଜ ।
ଜ୍ୟୋତିଷ ପାଠରେ ପୁଣି ଭାରି ସେ ପ୍ରବୀଣ,
ହାତରୁ ପକାଏ ନାହିଁ କମିଷେ ଦୁର୍ବିଣ ।
ଗୋଟାଏ କଲ ସେ କାମ ଓଡିଶା ସକାଶେ,
ସେଥିପାଇଁ ତାହା କଥା ମୋ ମନକୁ ଆସେ ।
ବଣର ମାଲଙ୍ଗ ସବୁ ପଠାଣି ସାଆନ୍ତେ
କାହିଁ ପଡିଥିଲେ ବଣ ଭିତରେ ଏକାନ୍ତେ ।
କେବେ କେହୁ ଲୋକ ତାଙ୍କୁ ନ ପଚ୍ରେ ଥରେ,
ଯୋଗେଶ ଚହ୍ଲାଇ ଦେଲେ ଭାରତ ମଧ୍ୟରେ ।
ଆମ୍ଭମାନଙ୍କର କଲ ଭାରି ଉପକାର,
ହେ ଯୋଗେଶଚନ୍ଦ୍ର ରାୟ ଜୁହାର ଜୁହାର ।

ହେ ବେଦମୂରତ ବୈଦ୍ୟନାଥ ବାହାଦୁର,
ରହିଟି ଉଠୁଛି ନାମଟା ତ ବହୁଦୂର ।
ବେଳେ ବେଳେ ଭଲ ଭଲ ହୋଇଯାଏଁ ବଣା,
ନାମ ଅନୁରୂପ କାମ ଗଲ ନାହିଁ ଜଣା ।
କାମ ଯୋଗେ ନାମ ବିନା ହୁଏ ଚିରସ୍ଥାୟୀ,
ଟଙ୍କା ସୁନା ଯାଏ ନାହିଁ ସାଙ୍ଗରେ ଗୋଡ଼ାଇ ।

ହେ ପ୍ୟାରୀ ଅଗ୍ରର୍ଜ୍ୟ ଭାଇ ଫାଟିଯାଏ ଛାତି . .
ଗୋଟି ଗୋଟି ମନେ କର ତୁମ୍ଭ ଚିତ ଖ୍ୟାତି ।
ଝାଡ଼ାକଇ ରୋଗେ ଯାତ୍ରୀ ପଡନ୍ତି ହତାଶେ,
କେ ଦିବ ଔଷଧ ସେନ ଅଜ ତାହା ପାଶେ ?

ଓଡ଼ିଶାର ଇତିହାସ ଲେଖିଥିଲା ପ୍ୟାରୀ,
ଏମନ୍ତ ସୁନ୍ଦର ଲେଖା ନ ଦେଖେଁ କାହାର ।
କେତେଜଣ ଭଲଲୋକ ଶତ କଥା କହି,
ପଢ଼ିବାକୁ ଦେଲେ ନାହିଁ ଇସ୍କୁଲରେ ବହି ।
ଛି ଛି ଭଲଲୋକ ଯେବେ ବୋଲିବ ତାହାଙ୍କୁ,
କଳିଆ ଖଳୁଆ ଆଉ ବୋଲିବ କାହାକୁ !
ଗରିବର ପୁଅ ପ୍ୟାରୀ ଯାହା ଅର୍ଜ୍ଜି କରି,
ଲକ୍ଷପତି ହେଲେ ମଧ୍ୟ ଯିବ ଅପସରି ।
ମରନ୍ତି ତ ସବେ, ନୋହେ ମରଛ ଅକାଳେ,
ପ୍ୟାରୀ 'ଏକାଡେମି' ନାମ ଥିବ କାଳେ କାଳେ ।

ଧନ୍ୟ ହେ ସୁଦାମଚନ୍ଦ୍ର ବିଖ୍ୟାତ ଉତ୍କଳେ,
ଧୂରୁଷସିଦ୍ଧହସ୍ତା ବୋଲି ଡାକନ୍ତି ସକଳେ ।
ରାଜା ଦରବାରେ ଭଲ ଅଛି ନାମ ଡାକ,
କର କିଛି କାମ ବନ୍ଧୁ ଯାଉ ଦେଶଯାକ ।
ଜଣା ଅଛି ଜଣେ ତୁମ୍ଭେ କବିତା-ଚତୁର,
ଚିହ୍ନି ଦେଇ ବୋଲ ଏଠା କାଚ, ଏଠା ହୀରା ।
ଦରିଦ୍ର କବିଙ୍କୁ କିଛି କିଛି କର ଦାନ,
ତୁନି ତୁନି କେହି ଯେହ୍ନେ ନ ପାଏ ସନ୍ଧାନ ।
କଥାଖୋଜା ଲୋକ ଥୋକେ ଛନ୍ତି ଜଗତରେ,
ଖୁଜି ଖୁଜି ଲୁଚ କଥା ଶୁଣନ୍ତି କାନରେ ।

ଉତ୍କଳର ଯୋଗ୍ୟ ପୁତ୍ର ଶ୍ରୀ ନନ୍ଦକିଶୋର,
ରୂପେ ଗୁଣେ ଯୋଗ୍ୟତାରେ ଶ୍ରୀନନ୍ଦକିଶୋର ।

ତୁମ୍ଭର କବିତାମାଳା ଧରେ ଲୋକେ କଣ୍ଠ,
ଚନ୍ଦ୍ରା ବଳୀ କଲମରୁ ପଡ଼ୁଛି କା ବନ୍ଧୁ ।
ଉଜ୍ଜ୍ୱଳ ଛାପ ଲେଖିଅଛ ସ୍ଥାନ ସ୍ଥାନ—
ମୋ ବର୍ଣ୍ଣରେ ପରିଚୟ କରିଛ ମହାନ ।
ସ୍ୱାଭାବିକ କବି ବୋଲି ଥିଲ ଲୋକେ ଜଣା,
ସରକାରୀ କାର୍ଯ୍ୟେ ଚିହ୍ନାଗଲା ଗୁଣପଣା ।
କି ସୁନ୍ଦର ଚିତ୍ର ପକ୍ଷୀ ବାଳିକା ଚରିତ,
ସରଳ ତରଳ ପୂର୍ଣ୍ଣ ସୁନ୍ଦର ଦେଖନ୍ତୁ,
ପଢ଼ିଗଲି ବେଳେ ପକ୍ଷୀ ପ୍ରସଙ୍ଗ ବାରତା,
କେହି କବି କହି ନାହିଁ ଏପ୍ରକାର କଥା ।
ଉଚ୍ଚ ସ୍ଥାନ ଲଭିଅଛ ଶିକ୍ଷାବିଭାଗରେ,
ଉଚ୍ଚ କୀର୍ତ୍ତି ରଖିଯାଅ ଉତ୍କଳ ଦେଶରେ ।
କରନ୍ତୁ ତୁମ୍ଭଙ୍କୁ ମହାପ୍ରଭୁ ଚିରଜୀବୀ,
କରିବ କଲ୍ୟାଣ ଯେତେ ଦିନ ବଞ୍ଚିଥିବ ।

ମୃତ୍ୟୁଞ୍ଜୟ କାବ୍ୟତୀର୍ଥ ଶ୍ରୀବାଣୀଭୂଷଣ,
ଧୀର ଶାନ୍ତ ଜ୍ଞାନୀ ମିଷ୍ଟ ବାଣୀରେ ଭୂଷଣ ।
ଜଣାଗଲ ତୁମେ ଏକା ଗୋଟାଏ ପଣ୍ଡିତ,
ଲେଖି ପାର ଦ୍ରୁହିତତ୍ତ୍ୱ ଜୀବନଚରିତ ।
ଅମୂଲ୍ୟ ସଂସ୍କୃତ ଭାଷା ରତନଭଣ୍ଡାର,
ଉତ୍କଳରେ ଅନୁବାଦ କରୁଛ ତୁମ୍ଭର ।
ଯେତେକ ନାଟକ କରିଛନ୍ତି ଅନୁବାଦ,
ପାଠ ମାତ୍ର ଦୂର ହୁଏ ମନରୁ ବିଷାଦ ।
ଦୃଢ଼ରୂପେ ବୋଲି ପାରେଁ, ଉତ୍କଳ ଭାଷାରେ
ଏଥିଁ ବଳି ଭଲ କେବେ ହେବାକୁ ନ ପାରେ ।

ହେ ବ୍ରଜସୁନ୍ଦର ବାବୁ ବ. ଏ. ପାସ କରି
ଅଚ୍ଛା କଥା ତୁମ୍ଭେ ଯାହା ନ କଲଂକୌଶଳ ।
ଦୂଆ ଅଛୁ ଜମିଦାରୀ ଖଜଣା ସଲାମୀ,
କିଂବା ବା କରିବ ଯାଇ ପରର ଗୋଲାମୀ !
କର ଜନ୍ୟ ମାତୃଭାଷା-ଉନ୍ନତି କାମନା,
ମୁକୁର ପ୍ରେସକୁ ଦେଖି ଅଛୁ ଭଲ ଜଣା ।
ଜଣା ମଧ୍ୟ, ଧାଇଁ ବୁଲି ସ୍ୱଦେଶଂକଲ୍ୟାଣେ,
ଢେରଦନୁ ଭଲ ଜାଣିଅଛୁଁ ଆମ୍ଭେମାନେ ।
ଅବଶ୍ୟ ଅବଶ୍ୟ ଏହୁ କାମନା ଅଫଳ,
ଟିକିଏ ଚଞ୍ଚଳ ହେଲେ ହେବ ଭରି ଭଲ ।
କାମ ପଡିଗଲା ବେଳେ କର ଯେବେ ମଠ,
ଜାଣିଥିବ ଭଲରୂପେ ଚଳେ ନାହିଁ ମଠ ।

କବି ଉକାୟଙ୍କ ଢେର ପଢ଼ିଛ କବିତା,
ନବେଳାରେ ବସି ବସି କରେଁ ମନେ ଚିନ୍ତା ।
ଅଚ୍ଛା ଅଛୁ ଏହାଙ୍କର ପ୍ରତିଭାର ବଳ,
କରିଦେବ ନିଶ୍ଚୟ ମାତୃଭାଷାକୁ ଉଜ୍ଜ୍ୱଳ ।
'କରଣ ସାଅନ୍ତଙ୍କର ଢମ' ଗୀତ ଗାଇ
ଅଖିରେ ଅଙ୍ଗୁଳି ଗୁଞ୍ଜି ଦେଇଛ ଦେଖାଇ ।
ଏଥିରେ ତାହାଙ୍କ ଯେବେ ନ ହେବ ଚେତନା,
ହଉନ୍ତୁ କଙ୍ଗାଲୀ ମୂଢ଼େ, କାଅଁ କର ମନା !

ଝିଙ୍ଗାରପୁରରେ ସୁଖେ ଥାଅ ଚିରଦନ,
ସବୁବେଳେ କର ଧ୍ୱନ୍ ତାକ୍ ତାକ୍ ଧ୍ୱନ୍ !
ଦକ୍ଷିଣୀ ଚୌପଦୀ ଆଉ ଗୋଟିପୋ ତାଧିଆ,

ଶୁଣି ଶୁଣି କାନ ହୋଇ ଗଲଣି ବଧିଆ ।
ଗାଅ କରୁ ନୂଆ ଗୀତ ଖୁସି ହେଉ ମନ,
ଓଡଶାରେ ଲୋକେ ବୋଲୁଥିବେ ଧନ୍ୟ ଧନ୍ୟ ।
ଦେଖାଯାଉ କାଢ଼ ଏକ ନୂଆ ଯାତ୍ରାଦଳ,
କେ ଶୁଣିବ ଗୁଚ୍ଛାଟାରେ ଯିଠିଲେ ମାଦଳ !
ଅଛୁ କି ଏମନ୍ତ କଛୁ ନୂତନ ରାଗିଣୀ,
ମୂଳଟାରୁ ବଢ଼ି କଳନ୍ତର ଯିବ କଣି ?
ବଞ୍ଚାଇ ରଖିଛୁ ଏକା ଓଡଆ ସଙ୍ଗୀତ,
ଇତହାସେ ସ୍ୱର୍ଣ୍ଣାକ୍ଷରେ ରହିବ ଲଖିତ ।

ତେପୋଟି ଇନ୍‌ସ୍ପେକ୍‌ଟର ପ୍ୟାରି ସେନେ,
ଛପାଖାନାଠାରୁ ଆଉ ଆସୁ ନାହିଁ କେନେ ?
ଖଣ୍ଡେ ଚଟି ବଇ ଲେଖି ପଢଲ କ୍ଷା ଥକ,
ଏଡ଼େ ଅଳସୁଆ ହେଲେ କାମ ଚଳବ କ !
ତୁମ୍ଭ ପର ଦେଖି ନାହିଁ ଖାଣ୍ଟି ଲୋକ ଜଣେ
ମିଷ୍ଟଭାଷୀ ସଦାଶୟ ସାଧୁ ଭଦ୍ରପଣେ ।
ଦୁଇ ଗ୍ରହ ଖଣ୍ଡ ପୋଥି ଲେଖିପକା ଛଇ,
ଯାଅ ଯାଅ My friend good bye good bye !

ଅହେ ଦାମୋଦର କାହିଁ ଲୁଗ୍ରଇଛ ମଥା,
ଗାଅ ଶୁଣେ କପିଳାସ ପୁଣ୍ୟକ୍ଷେତ୍ର କଥା ।
ଆସ ଲେଖ ଗାଅ ଆଉ ଦୁଇ ଗ୍ରହ ଗୀତ,
ମାଟି ହୋଇ ଯାଉଅଛୁ ଓଡଆ ସଙ୍ଗୀତ ।

ସୀତାନାଥ ଭଲ ଅଛ ମନରେ ବଗ୍ରହ,
ଲେଖ ବସି ପୋଥି ଅଉ ଖଣ୍ଡ ଦୁଇ ଗ୍ରହ ।

ଶସ୍ତା ଦାମ କର ଗୃହଅଢ଼େ ଦଅ ବୁଣି,
ଗରାଖ ଅସନ୍ତୁ ଧାଇଁ ଦୂର ଦେଶୁଁ ଶୁଣି ।

ବନ୍ଦଗୀ ବନ୍ଦଗୀ ଭାଇ ଜଗନ୍ମୋହନ ଲାଲ,
ଆଉ ତ ବୁଝିଲ ନାହିଁ ହରମେଠ ହାଲ ।
ବସିଅଛ ବୁଢ଼ା ହୋଇ ଖାଇ ପେନସନ,
ଦେଶପାଇଁ କର କଷ୍ଟ, ଏହି ନିବେଦନ ।

ଢୋମପଡ଼ା ପିଲ୍ଲ ରଜା ଶୁଣ ମୋର ବାପ,
ପଢ଼ାଇଅଛନ୍ତି ବାପା ବହୁତ କିତାପ ।
ପାଞ୍ଚଟା ଆଗରେ ଯେବେ ହେବ ନାହିଁ ଖଡ଼ା,
ତେବେ ତ ବୋଲିବେ ଲୋକେ ଏଠା ଡୋମପଡ଼ା ।

ଭଲ କରଛନ୍ତି ଇଥେ ବାମ୍ଣପଣିଆ,
ପୁସ୍ତକ ଛପାଇ ଦେଇ ଅଣେ ଦଅଣିଆ ।
ଅଚ୍ଛା ହେଲା, ଭଲ ହେଲା, ପେଟ ଚଳୁଥାଉ,
ଖଣ୍ଡିକାଡେ ପୋଥି ମଧ୍ୟ ଛପା ହୋଇଯାଉ ।

ଆଗେ ଆଗେ ଆସିଥିଲେ ଯେତେ ମିସନାରି,
ସେହି ସବୁ ସାହେବଙ୍କୁ ପୂଜା କରେଁ ଭାଇ ।
ପ୍ରଥମରେ ପଢ଼ାଇଲେ ଇସ୍କୁଲିଆ ପାଠ,
ପ୍ରଥମରେ ଦେଖାଇଲେ ଛାପାଖାନା ବାଟ ।
ଛପାପୋଥି ଆଣି ଦେଖାଇଲେ ପ୍ରଥମରେ,
ଔଷଧ ବାଣ୍ଟିଲେ ପ୍ରଥମରେ ଘରେ ଘରେ ।

ସାଧୁ ସାଧୁ ସାଧୁ ସ୍ଵୟଂ କଲ ସାଧୁ କର୍ମ,
ଛାଡ଼ିଅଛ କୁଳ ପାଳିବାକୁ ବ୍ରାହ୍ମ ଧର୍ମ ।

ଛାଡ଼ ପାଟିଯାଏ ଭଲ ସେ କଥା ସକଳ,
ପ୍ରଭୁ ଆଜ୍ଞା ହେଲା ତୁମ୍ଭ ଜୀବନେ ସଫଳ ।

ଉତ୍କଳ ମଧ୍ୟରେ ଜଣେ ନରେନ୍ଦ୍ର ସର୍କାର,
ଧରିବ ତାହାକୁ ଯେବେ ପଡ଼ିବ ଦର୍କାର ।
କେବଳ ନୂତନ ତ ସେହି ଉତ୍କଳରେ best.
ଦେଖିଛି ବହୁତ ଥର, ଭାରି ସେ honest.

ଗଡ଼େଇ ଛଡ଼ାଇ ନନା ଓଳଗି ଓଳଟି,
ଡାକୁ ବା ନ ଡାକୁ କେହି ଦେଖି ବୁଲ ରୋଗୀ ।
ପୂଜା ନ ପାଇବେ କଳକାଳରେ ବ୍ରାହ୍ମଣ,
ସେହିପରି ଦୃଢ଼ ଢିଳ ବଟିକା ପାଞ୍ଚଣ ।
ଦେଶୀ ଚିକିତ୍ସାରେ ନାହିଁ ଲୋକଙ୍କ ଆଦର,
କରିବେ ସମସ୍ତେ ପୂଜା ଇଂରାଜୀ ଡାକ୍ତର ।
ଦିନେ ବାବୁମାନଙ୍କର ଫିଟି ପାରେ ଜ୍ଞାନ,
ସେ ଦିନ ପାଇବ ପୂଜା ଚରକ ନିଦାନ ।
ଆପଣା କାମରେ ହେଳା କର ନାହିଁ ଭାଇ,
ଭୁଲ ଭୁଲୁଥାଅ ମୂଳ ମୂଲକା ଭୁଣ୍ଡାଇ ।

Educated ବାବୁମାନଙ୍କର ବ୍ୟବହାର
ଦେଖି ଦେଖି ହେଲଣି ମୁଁ ନିହାତ ନାଚାର ।
Old fool Prejudice ପକାଇଛ କାଟି,
କଥାବେଳେ ମେଲିଯାଏ ଦେଢ଼ପ୍ରୁଷ୍ଠ ପାଟି ।
Science, logic ସବୁ ପକାଇଛ ଖୁଣ୍ଟି,
ଭାଟ ଗ୍ରନ୍ଥ ଜାଣୁ ନାହିଁ ଡେଉଁଅଛ ଝୁଣ୍ଟି ।

ଯୋଉଁଠ୍ ସିଦ୍ଧାନ୍ତ ଘୋଷିବାରେ ଦେଇ ମନ
ଫିଙ୍ଗାଇ ଦେଖିଲ ନାହିଁ ଗୌତମ ଦର୍ଶନ ।
ଇଂରେଜୀ ନାଟକ କାବ୍ୟ ଯେନ ଅଛ ମାତି,
ଫିଙ୍ଗିଦେଇ ଭଟ୍ଟି କାଳିଦାସ ଭବଭୂତି ।
କହିବ କାହାକୁ ଦୁଃଖ ନ ବୁଝିଲ ବେଳୁ,
ସେ ସବୁ ଯେ ଘରଧନ ନୁହେ କେତେବେଳେ ।
ଅଗେ ଥିଲ ଦେଶେ ଗୋଲସ୍ତାନ ବୋସ୍ତାନ,
ଏତେବେଳେ ଚିହ୍ନ ନାହିଁ ଅଖ୍ଲାକ୍‌ଜୀ ଅସ୍ଥାନ ।
ଇଂରେଜ ଇଂରେଜୀ ବିଦ୍ୟା ରଖିଯିବେ ନାହିଁ,
ତେତେବେଳେ ରହିଥିବ କଳ କଳ ଗୃହିଁ ।
ଯେଉଁ ପାଠ ପଢ଼ିବାରେ ଦେଇଅଛ ମନ,
ନ ବୁଝ ସେ ତ ନୁହେ ତୁମ୍ଭ ଗଣ୍ଠିଧନ ।
ଷଣ୍ଢ ଇଙ୍ଗରେଜୀ ଯେହ୍ନେ ମନା କରୁ ନାହିଁ,
କିନ୍ତୁ ବାପା କାମ କର ଜାତି କୁଳ ଗୃହିଁ ।
ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ,
ହାୟ ହାୟ ଲଜ କଥା କହିବ କାହାକୁ !
ବୋଲିବ କଙ୍ଗାଲ ତୁମ୍ଭ ଘରେ ପାଠ ନାହିଁ,
ଅପେ ଲେଖ, ଅପେ ପଢ଼, ରଖ ପୁଅ ପାଇଁ ।
ଛନଶ ବରଷ ଅଗେ କି ଥିଲ ଇଂରେଜୀ,
ଦେଖ ତ ବଙ୍ଗଳା ଭାଷା କି ହେଲଣି ଅଜି ।
ଯତ୍ନରେ ହେଲ ଅବା ଅପେ ହୋଇଛନ୍ତି ଏପରି,
ତୁମ୍ଭ ମାତୃଭାଷା କିପାଁ ନ ହୈବ ସେପରି ?
ନକଟେ ବାବୁମାନଙ୍କର ଦେଖିଛନ୍ତି ଦୁର୍ଦ୍ଦଶା,
ଲାଜ ମାଡ଼େ କହିବାକୁ ନିଜ ମାତୃଭାଷା ।

ନାଗ୍ରର ହାଲଚେ ଯେବେ ହୁଏ କହିବାକୁ,
ବଡ଼ ହସମାଡ଼େ କାନ୍ଥ ତାହା ଶୁଣିବାକୁ ।
ଓଡ଼ିଆ ଏଗାରପଣି ବାଙ୍ଗ ଇଙ୍ଗରେଜୀ,
ଝାଉଁଳ ଟେଂରେମୁଁ ଏକ ହୁଏ ମିଶି ସାଜ !
ଭଲ ଗୋଟେ ମାତୃଭାଷାଂକସ ହେବ ଭାଇ,
ଚାଲ ଯାଉଅଛୁ ଢାମ ରୁଣ୍ଡାଇ ପୁଣ୍ଡାଇ ।
କୁକୁର କପାଳେ ଗୋଟେ ବନାଇବ ଘର,
ଗୃହିଲେ ବାରମିଶା ଅଇଣ୍ଠାପତ୍ରର !
ସମ୍ଭାଳି ପାରିଲି ନାହିଁ କହିଲି ଦ'କଥା,
ବାବୁମାନେ ଭାଗ ନାହିଁ ଠେଙ୍ଗାରେ ମୋ ମଥା ।
Learned ବାବୁ ଦେଖି ବଡ଼ରେଁ ମନରେ,
ଡାରୁଇନ ଅସିଥିଲେ ଏ ଦେଶକୁ ଥରେ,
ଏମାନଙ୍କୁ ଦେଖି ବୋଲିଛନ୍ତି ଅନୁମାନେ,
ମାଙ୍କଡ଼ବଂଶରୁ ଜନ୍ମିଛନ୍ତି ଲୋକମାନେ !
ଇଂରେଜୀକୁ ହେଉଥାଅ ଦାନ ଗାଡ ଘୋଷି,
ନ ଛୁଅଁ ପଛକେ ପାଣି ପଦାଆଡ଼େ ବସି,
କର୍ପୂର ଖଡ଼ିରେ ପିନ୍ଧ ବନାତର କୋଟ,
ଫିଙ୍ଗିଦେଇ ଛେନାବଡ଼ା ଖାଅ ବସ୍‌କୋଟ,
ପିନ୍ଧ waist-coat କଥା କୁହ ଇଂରେଜୀର,
ଖାଅ ଦରସିଜା ମାଂସ ଦୁର୍ଗନ୍ଧ ପନିର,
ତିଆ ହୋଇ ମୁତ, ଅବା ଘଷ ନାହିଁ ଦାନ୍ତ,
ଇଂରେଜ ନ ହେବ, ଥିବ ଓଡ଼ିଆ ନଚ୍ଛାନ୍ତ !
ମୟୂର ଲାଞ୍ଜକୁ ଗୁଞ୍ଜି ବୁଲ ନାହିଁ ଆଉ,
ନ ହେବ ମୟୂର, ଥିବ ଯେ କାଉ ସେ କାଉ ।

Nature ଯାହାକୁ ଯାହା ଦେଇଅଛି ବାଣ୍ଟି,
ନ ପାରିବ change କରି ତାହା ଘୁଞ୍ଚି ଘାଣ୍ଟି ।
ଯାହା କରୁ ବସ୍ତ୍ରରହୁ ସବୁ କଥା ଭୁଲ,
ହୋଇ ନ ପାରିବ କେତେବେଳେ successful.
କର ନିଜ ଦେଶ ପୁଣି ଭାଷାର ଉନ୍ନତି,
ଲଗିପଡ଼, ଧ୍ୱଂସଯାଉ ତାହାର ଦୁର୍ଗତି ।
ଅହେ ବାବୁମାନେ କରେଁ request excess,
ମୋ ନାମରେ ନ ଆଣିବ defamation case.
ନିତାନ୍ତ ରାଗରେ ଯେବେ ହେବ ଗର ଗର,
Withdraw କରିନେବି ଲେଖାଟା ମୋହର ।

ଇଚ୍ଛା ଥିଲା ଦେଖିଯିବି ଖଣ୍ଡପଡ଼ା ଗଡ଼,
କଣ୍ଟିଲୋ ପାଖରୁ ଆଉ ନ ଚଳିଲା ଗୋଡ଼ ।
ନର୍ଦ୍ଦମ ଦେଉଛି ମାଡ଼ କଂସାରୀଙ୍କ କଂସା,
ଦେଖି ପ୍ରଜାମାନଙ୍କର ଉଡ଼ଯାଏ ହଂସା ।
ପଇସା କଉଡ଼ି ସବୁ ଗନ୍ତାଘରେ ଅଣ୍ଟା,
ଦେବା ନେବାବେଳେ ବାଜେ ଠଂ ଠଂ ଘଣ୍ଟା ।
କିବା ବୁଦ୍ଧି ବାହୁବଳ ଯିବ ହାରି ମାନ,
ଲୋକରେ ଜଣାଏ କାନୁ ମୂର୍ଖ ମହାଜ୍ଞାନୀ ।
ଉଠିବ ନାହିଁଟି ବିନ୍ଦା କହିବାକୁ ହକ୍,
ମୂଳଠାରୁ ମୁଣ୍ଡପାଏଁ ସବୁ ଠକ୍ ଠକ୍ ।

ବନ୍ଦଇ ପଠାଣି ସାମନ୍ତ ତୁମ୍ଭ ଶ୍ରୀଚରଣ,
ଖଣ୍ଡପଡ଼ା ମଣ୍ଡଳରେ ଅମୂଲ୍ୟ ରତନ ।

ନୁହ ତୁମ୍ଭେ ସିଂହାସନେ ଲଗ୍ନ ଝୁଣ୍ଟା ମୋତି,
ଜ୍ଞାନ-ସିଂହାସନେ ସଦା ସ୍ଥିର ତୁମ୍ଭ ମତି ।
ଯେ କୀର୍ତ୍ତି ଉଡ଼ାଇ ଦେଲ ଭାରତ ମଧ୍ୟରେ,
ରାଜାମାନେ ନ ଦେଖିବେ ସ୍ୱପନରେ ଥରେ ।

ଯାଉଅଛୁ ପଶ୍ଚିମକୁ ସଳଖେ ସଳଖେ,
ଦଶପଲ୍ଲା ରାଜଧାନୀ ରଖିଗଲୁ ପାଖେ,
ଅବଶେଷ ରହିଗଲା ମନରେ ମୋହର,
ଦେଖି ନ ପାରିଲୁ ବେଳେ ଛମୁଁ 'ଗନ୍ତାଘର' ।
ବ୍ରହ୍ମପୁରୀ ପାଟ ଯଥା ଛ ହାତ ଚଉଡ଼ା,
ସାଢ଼େ ଷୋଳହାତ ପିନ୍ଧା ନ ହାତ ପାଛୁଡ଼ା,
ଖାଣ୍ଟି ସୁନା ବୀରବଳ୍ଳୀ ଜଡ଼ାଉ ପଦକ,
ଶୁଣି ନ ପାରିଲୁ ମଧ୍ୟ ସେ ଆଜ୍ଞା•ପଦକ ।

ମନେ କରିଥିଲୁ ଯିବ ଆଠଗଡ଼ ବାଟେ,
ଡର ମାଡୁଅଛୁ ପୁଣି କପାଳ ବା ଫାଟେ !
କାହିଁକି ଡରିବ ଏତେ ଏଡ଼େ କି ଗରଜ,
ଖାଇ ନାହିଁ ଛାମୁ ଗନ୍ତାଘରୁ ମୁଁ କରଜ ।
ଯେବେ କେହି ଲୋକ ମୋତେ ଧରିବ ଜଠାଇ,
ଦୁଇ ଚାରି ଦଣ୍ଡ ଠାଣି ପଡ଼ିବ ଭୁଲାଇ ।

ସାର୍ଥକ ମୋହର ଜନ୍ମ ଧରିଲୁ ସେ ନାମ,
ମହାରାଜ ଭଗୀରଥ ସର୍ବଗୁଣଧାମ ।
ତାଙ୍କ ପରି ଆଉ କେହି ରାଜା ହେବ ଜଣେ,
ପାଳିବ ସନ୍ତାନ ପରି ନିଜ ପ୍ରଜାଗଣେ ?

ତାଙ୍କ ଗଲାବେଳୁଁ ମୁହିଁ ଛାଡ଼ିଅଛି ଆଶା,
ନ୍ୟାୟଶାସ୍ତ୍ର ପଢ଼ପଢ଼ ଉତ୍କଟ ମୀମାଂସା ।"

ଆହେ ବନମାଳି ଭେଟେ ଅବଶ୍ୟ ଯାଉ,
ସେଥିରୁ କି ଦେଶପାଇଁ ନ ହେବ ଈପ୍ସିତ ?
ତୁମ୍ଭ ପରି ଶାନ୍ତଶୀଳ କ୍ଷମାବନ୍ତ ଜଣେ
ଦେଖିବାର ନାହିଁ ପୁଣି ନ୍ୟାୟବନ୍ତପଣେ ।
ଭଗୀରଥ ହେଲ ତୁମ୍ଭେ ଭୁଲ ନାହିଁ ଭାଇ,
କର କରୁ କାମ ତାଙ୍କ ଗୁଣଅନୁଯାୟୀ ।
ତୁମ୍ଭ ସଙ୍ଗେ ଯେଉଁ ଲୋକ କହୁ ନାହିଁ କଥା,
ନ ଜାଣେ ସେ କି ପଦାର୍ଥ ଅଟେ ସୁଶୀଳତା ।

ହାୟ ରେ ନିଷ୍ଠୁର କାଳ କି କଲୁ କି କଲୁ,
ଜ୍ଞାନବନ୍ଧୁ ମହେନ୍ଦ୍ରକୁ ଅକାଳେ ହରିଲୁ !
ଉଇଁ ଅସ୍ତ ଥିଲା ଚନ୍ଦ୍ର ଓଡ଼ିଶା ଗଗନେ,
ଘେନିଗଲୁ ତାକୁ, ଦୁଃଖ ନ ହେଲା କି ମନେ !
କିଏ ଅଛି ଦୟାଶୀଳ ଦାତା ତାହା ପରି,
ହାୟ ହାୟ ସବୁ କଥା ଯାଇଅଛି ସରି ।

ମାତଃ ସୁଲକ୍ଷଣା ଦେବି, ଯୋଡ଼ି ବେନି କର
ଦଣ୍ଡବତ କରୁଅଛି ଚରଣେ ତୁମ୍ଭର ।
କଟକାନାଳେ ଥିଲି ପ୍ରାୟ ଅଢ଼ାଇ ବରଷ,
ସେତେବେଳେ ମୋତେ ଜଣା ଥିଲା ନାହିଁ ଯଶ ।
ଜଣା ଥିଲେ ଆପଣଙ୍କ ଏତେକ ଧାର୍ମିକତା,
ପାଶେ ବସି ଶୁଣିଥାନ୍ତି ଦୁଇ ଚାରି କଥା ।

କେଉଁ ଗୁଣେ କି ତପସ୍ୟା କରି ବୋଲ ସତ,
ଉତ୍କଳ ଲଳନାକୁଳେ ହେଲ ଗୁଣବନ୍ତ ।

ରାମଚନ୍ଦ୍ର ବୀରବର ତାଳଚେରପତି,
ହାୟ୍ ହାୟ୍ କି କଲ୍ କରେ ନିଷ୍ଠୁର ନିୟତି !
ନବୀନ ବୟସେ ତାଙ୍କୁ ନେଇଗଲ୍ କାହିଁ,
କାଳକ୍ଷା ଟଣୀଙ୍କି ଦୁଃଖସାଗରେ ବୁଡ଼ାଇ !
ଯାସୋଗ୍ର ତ ଥିବ ନାହିଁ ତାହା କଥା ମନୁ,
ପଢ଼ି ଗ୍ରନ୍ଥ ଭାଗବତ ପରାଶର ମନୁ ।

ଅହେ ମୁନପାଳ ଥିଲ ଯାନ ରଜା ଜଣେ,
ମାଏ କେତେ ରଜାଠାରୁ ବଡ଼ ଦାନପଣେ !
ରଖି ଯାଇ ନାହିଁ ସତ ଗଣ୍ଡାଘରେ କଣ୍ଠ,
ସୁନା ରୁପା ଗୁଡ଼ା ତୁମ୍ଭ ସଙ୍ଗରେ ଯାଇଛ ।

ଶ୍ରୀ ମହେନ୍ଦ୍ରଦେବ ମୋର ପଡ଼ୁଛ ମନରେ,
କଟକରେ ଦେଖିଥିଲୁ ଆପଣଙ୍କୁ ଥରେ ।
ହେବ ନେକନାମ ଅଛ ତୁମ୍ଭ ସରକାରେ,
ନ ଜାଣେ କପର ଅଛ ପ୍ରଜାଗଣଠାରେ ।
ଦୁର୍ଭିକ୍ଷକାଳରେ କଲ ଥିଲ ହାତପିଡ଼ା,
ଏ କଥାଟା ଗୁରିଆଡ଼େ ଅଛି ଢୋଲପିଟା ।
ଦେଖାଅ ଆମ୍ଭଙ୍କୁ ଦୁଇ ଗୁରଟା ନମୁନା,
ବୁଝିବୁଁ ଗିଲଟି ନୁହ ଖାଣ୍ଟି ପଇ ସୁନା ।
ଭାର ଖୁସି ହେଲ ଫିଡ଼ି ପଣ୍ଡିତସର୍ବସ୍ୱ,
ଆଶା ଅଛି ଅଉ କଛ ପାଇବ ଅବଶ୍ୟ ।

ହେ ସୁଜଳ ମହାରାଜ କରେଁ ନମସ୍କାର,
ହିତୈଷିଣୀ ତୁମ୍ଭ ଯଶ କରୁଛି ପ୍ରଚାର ।
ମୁଗଲ୍‌ବନ୍ଦ ଛତିଶ୍‌ଗଡ଼ ବହୁତ ଅନ୍ତର,
ଦୁହଙ୍କୁ ମିଳାଇ ଦେଇଅଛ ପରସ୍ପର ।
ବାମଣ୍ଡା ରାଜ୍ୟରେ କରୁଅଛ ରାଜପଣ,
ସ୍ବାଧ ଜ୍ଞାନରାଜ୍ୟେ ଅଟ ନୃପତି ଆପଣ ।
ହେ ରାଜନ ମାତୃଭାଷା ଉନ୍ନତିକାରଣେ
ଉତ୍ସାହିତ କରୁଅଛ ଗ୍ରନ୍ଥକର୍ତ୍ତାଗଣେ ।
କେତେ ଥିଲେ କେତେ ଛନ୍ତି ଗଡ଼ଜାତେ ରଜା,
ଉଡ଼ାଇଛି କିଏ ତୁମ୍ଭ ପରି କୀର୍ତ୍ତିଧ୍ୱଜା ?
ବୁଲେଁ ସବୁଠାରେ ଛାମୁଗୁଣ ଗାଇ ଗାଇ,
ମହାରାଜ ବାହାଦୁର K. C. S. I.
ଓଡ଼ିଶା ବିକ୍ରମାଦିତ୍ୟ ସ୍ବର୍ଣ୍ଣ ଅକ୍ଷରେ
ଇତିହାସେ ଲେଖା ରହିଥିବ ଜଗତରେ ।
ସାମାନ୍ୟ ମନୁଷ୍ୟ ମୁହିଁ କି ଗୁଣ ଗାଇବି,
ମହାରାଜ ବାହାଦୁର ହୁଅ ଚିରଜୀବୀ ।

ମୋହର ବଚନ ଶୁଣ ନୀଳମଣି ଜନା,
ହିତୈଷିଣୀ ଲେଖିବାକୁ ନ କରିବ ମନା ।
ଏକକାର୍ଯ୍ୟ କର ଲଭ ପାଇବ ସକଳ,
ଯଶ ଅର୍ଥ ବିଦ୍ୟା ନାମ ଚତୁର୍ବର୍ଗ ଫଳ ।
ତୁମ୍ଭ କଥା ଢେର ଥର ପକାଏ ମୁଁ ମନେ,
ଅଟେଁ ଏକା self-made man ତୁମ୍ଭେ ଜଣେ ।
କାଗାଶିରେ ଧର ଏକା ପଡ଼ିଅଛ ଜନା,
ପରଶମଣିକୁ ଛୁଇଁ ଲୁହା ହୁଏ ସୁନା ।

ଶ୍ରୀମାନ ସଚ୍ଚିଦାନନ୍ଦ ଆନନ୍ଦ-ପ୍ରତିମା,
ଚଳୁଛି ଅକ୍ଷୁଣ୍ଣ ତୁମ୍ଭ ଗୌରବ ମହିମା ।
ବୋଲୁଛନ୍ତି ବସ୍ତୁଶର୍ମା ଶାସ୍ତ୍ରେ ଅଛି ଶୁଣି,
ପଦ୍ମରାଗ ଆକରରୁ ବାହାରଇ ମଣି ।
ପଶ୍ଚିମ ଆକାଶେ ଉଇଁ ଆସୁଅଛି ଚନ୍ଦ,
ଦୀର୍ଘଜୀବୀ ହୁଅ ବାପା କରେଁ ଆଶୀର୍ବାଦ ।

ପାଇଲ ଯୋଡଏ କବି ବାମଣ୍ଡାବଂଶରୁ,
ଅବଶ୍ୟ ମଳୟେ ଜାତ ଚନ୍ଦନର ତରୁ ।
କ୍ଷୁଦ୍ର ପଦ୍ୟ ଦୁଇଖଣ୍ଡି କବିତା ପୁସ୍ତିକା,
ନୋହୁ ବଡ଼ ଶିଳପଟା, ହୀରକକଣିକା ।
ଏହି ତ କବିତା ଗ୍ରନ୍ଥ ପ୍ରଥମ ନମୁନା,
କାଞ୍ଚନ ଖଣିରୁ ଜାତ କ୍ରମଶରେ ସୁନା ।
ଉତ୍କଳର ଉତ୍କର୍ଷିଣୀ ଜଣା ସର୍ବଲୋକେ,
ବ୍ୟାପ୍ତ ହେବ ନବ ନବ ଶନ୍ଧ ପୁସ୍ତକେ ।

ହୋଇ ହୋଇ ମନେ ପଡଗଲା ଆଜ ଥରେ,
ସେ ଯେ ହରିଦାସ ବାବୁ ଥିଲେ ବାଲେଶ୍ୱରେ ।
ସେକଣ୍ଡ ମାଷ୍ଟରୀ ଫାଙ୍କିଦେଇ ଗଲେ ପାଇ,
ଭୁଲ ଏବେ ବାହୁ ଦୃଙ୍କି ଛାତ୍ରଙ୍କ ଫୁଲାଇ ।
ଇଚ୍ଛା ଯେବେ ହେବ ତୁମ୍ଭେ ହେଡ଼ମାଷ୍ଟର୍,
କହିଦେବ ଅଛି ଏକ ଗୁପତ ମନ୍ତ୍ର ।
ଖଣ୍ଡିକାଡେ ବଇ ଲେଖିଯାଅ ନୂଆ ନୂଆ,
ନ ହେଲେ ମାଷ୍ଟର ମୋଟେ ବୋଲିବ ମିଛୁଆ ।

ନମସ୍କାର ଶରଚ୍ଚନ୍ଦ୍ର, ବାନୂର୍ଯୀ ପଦରେ,
ଭଲ ତ ଗାଇଲ ଗୀତ ଶାଳନ୍ଦୀକୂଳରେ ।
ଶୁଣାଗଲ ତୁମ୍ଭ କୃଷ୍ଣଭକ୍ତିତରଙ୍ଗିଣୀ,
ପଢ଼ିଅଛୁ ଜୟଦେବ ଗୁଙ୍କସ୍ୱୀ ରାଗିଣୀ ।
କାଏ ଯାନ କାଏ ବଢ଼ ଗଳ୍ପ ନାହିଁ ଜଣା,
କେତେ ଥର ତୁଳିବାକୁ ଯାଇ ହୁଏ ବଣା ।
ପଲ୍ଲଶି Battle ଦେଖି ବଙ୍ଗରେ ମନରେ,
Native ଙ୍କ ଚ଼ଲେଖିପାରେ ଇଂରେଜୀ ପଦ୍ୟରେ

ହେ କଣୋସ, କରଅଛୁ ତୁମ୍ଭକୁ ଭରସା,
ଗାଅ ଗାଅ ଶୁଣେ ସା ର ଗା ମା ପା ଧା ନା ସା ।
ବାବୁଏ ବୋଲନ୍ତି ନାହିଁ ଓଡ଼ିଆ ରଚିଣୀ,
ଦେଖାଅ ତ ବିଙ୍ଗଳାକୁ ଯିବ କା ନା କଣି ।
ସ୍ୱରଲିପି କରଦଅ ଯାଉ ବାଟ ଫିଟି,
ଦେଖନ୍ତୁ ସେମାନେ ଅଛୁ originality.
ସତ କଥା ଓଡ଼ିଆକୁ କେ ଯିବ ଆଦର,
ଗୋଟିପୋମାନେ ଯେ ଦେଇଛନ୍ତି ଶ୍ରାବ କର ।
ଜୀବନ ଉତ୍ସର୍ଗ କର କଣୋସମୋହନ,
ଦେଖାଅ ଓଡ଼ିଆ ଘରେ ଅଛି ଗୁଣିଧନ ।

ନୀଳାଚଳେ ନୀଳଚକ୍ର କରଥାନ୍ତୁ ବଳେ,
ସେ ଦେଶକୁ ମୁଁ ତ ଡ଼ରେ ଗଲି ନାହିଁ ଲକେ ।
ଜୁମ୍ମି ଖାଇଥାନ୍ତେ ମୋତେ ପଣ୍ଡେ ହୋଇ ଠୁଳ,
ଖେଉଳକୁ ମାଡ ବସେ ଯେମନ୍ତ ପୌତ୍ତଳ !

କେ ରଖନ୍ତା ଧାଇଁ ଆଜି ଦେଖି ମୋର ଦୁଃଖ,
ଦେଶ ଉପକାରପାଇଁ ଲୋକେ ତ ବିମୁଖ ।
ଜଣେ ବନ୍ଧୁଲୋକ ମୋର ଅଛନ୍ତି ସେଠାରେ,
ତାଙ୍କଠେ କଥା ମୋଠେ ଲେଖି ଅଛନ୍ତି ଭାଷାରେ ।
ଦେଖାଇବ ବିଶ୍ୱାସରେ ପାଠକ ତୁମ୍ଭକୁ,
ଦାଣ୍ଡରେ ପକାଅ ନାହିଁ ମାଙ୍କ ଏ କଥାକୁ ।

## ଗୁପ୍ତଭାଷା ।

ଜଗନ୍ନାଥ ମହାପ୍ରଭୁ ଶ୍ରୀଗୁରୁ ଗୋସାଇଁ,
ପୁରୀ ଜିଲ୍ଲା ପୋଷ୍ଟାଫିସ କୁଣ୍ଡିବେଣ୍ଟ ଯାଇ ।
ମକର ସତର ଦିନ ବେଳ ୧୦ ଘଣ୍ଟା,
ନମସ୍କାର ନିବେଦନ କରେଁ କର ଯୋଡି ।
କୁଶଳେ ସମସ୍ତେ ଛନ୍ତି ପିଲାପିଲି ଘରେ,
ତୁମ୍ଭ ଘରକଥା ଲେଖ ଫେରନ୍ତା ଡାକରେ ।
ଏ ସ୍ଥାନର କଥା କେତେ ପଚାରିଛ ମୋତେ,
ଯାହା ଅଳ୍ପ ଜାଣ ଅଛି ଲେଖୁଛି ଗୁପତେ ।
ଏ ସ୍ଥାନର ମିଠାକଥା ଚିନା ଗୁଡ଼ ବଳ,
ପାଚିଲା ସାଲମା କମ୍ବା ଶଙ୍କର କଦଳୀ ।
ସେବକମାନଙ୍କ ବିଦ୍ୟା କହୁଲେ ନ ସରେ,
ପିବି ରସ୍ତୁ ଅ ଅଂ ସବୁ ଆଖଡ଼ାଘରରେ ।
ହତ୍ତତ କରନ୍ତି ଦସ୍ୟା ପଣ୍ଡାଏ ଯାତ୍ରିଙ୍କୁ,
ଗୋଟିଏ ଅଟିକା ଦେଲେ ପଠାନ୍ତି ସ୍ୱର୍ଗକୁ ।
କେତେ ଥର ଶୁଣିଅଛି ପଣ୍ଡିତଙ୍କ କଥା,
ଲକ୍ଷ୍ମନ୍ତି ଝମ୍ପନ୍ତି ଶୀଘ୍ର ଯଥା ସ୍ୟାତ୍ ତଥା ।

ନ ବୁଝିଲି ନୈୟାୟିକମାନଙ୍କ ତରକ,
କେବଳ ଦେଖିଛି ଗଂଜୁଥାଆନ୍ତି ଗରଜ ।
ଏ ସ୍ଥାନର ବଡ଼ଲୋକ ଅଟନ୍ତି ମହାନ୍ତ,
ଧର୍ମବୀର କର୍ମବୀର ଯେସନ୍ତେ ହନୁମନ୍ତ ।
ପଢ଼ିଛି ଏ ସ୍ଥାନର କଥା ଛପିଲ,
ସବୁ କଥା ଲେଖିବା ତ ବଡ଼ ମୁସ୍କିଲ ।
ମାଏ ନ ଲେଖିଲେ କର ପାର, ମୁହିଁ ଛାର,
ସେଥିପାଇଁ ଲେଖୁଅଛି କଥା ଦୁଇ ଚାରି ।
ପ୍ରଥମରେ ଶୁଣିଯାଅ ମହାବୀର ହାଲ,
ସିଂହଦ୍ୱାରଠାରେ ବଡ଼ ଦେଖିଲି ବେଗାଲ ।

ବେତ ଧେନ ବସିଛନ୍ତି ଦ୍ୱାରୀ ସିଂହଦ୍ୱାରେ,
ତାଙ୍କ ବାରଣ ହେତେ ଦୁଃଖୀ ଯାତ୍ରିଠାରେ ।
କ ଚାଇଲେ ସେମାନଙ୍କଠାରୁ ଅଣ୍ଟାଖୁସା ।
ଚମକ୍କବ ଦେଖି ବୀରମାନଙ୍କର ଦୂଷା ।
ବାଇଶପାବଛ ଛଡ଼ି ଚାଲିଚଲେ ଭଙ୍ଗେ,
ଯାତ୍ରିମାନେ ପଡ଼ିଯାନ୍ତି ସେବକ ହାବୁଡ଼େ ।
କରଣ୍ଡିରୁ ଥଣ୍ଟେ ଅଣ୍ଟେ ଧରେ ଯେସନ୍ତେ ବକ,
ଧରନ୍ତି ଯାତ୍ରିଙ୍କୁ ଆସି ତେସନେ ସେବକ ।

ପଇତାରେ ବାନ୍ଧି ହାତ ଲଗାନ୍ତି ପେଟରେ,
ତାହିଁ ଯିବ ଯାତ୍ରୀ ଧରି ଚଢ଼ିଛି ଆଶାରେ ।
ଯଜାନ୍ତି ମନ୍ତ୍ରରେ ତାର ଆଶୀର୍ବାଦ ହାଲ,
ନ ପାଇଲେ କଡ଼ି, ରୌଦ୍ର ପୁରୁଷଙ୍କୁ ଗାଳି ।
ହିଅଣା ଲୋକଠା ମୁହିଁ ଗଣ୍ଠି କାଟି ବାଟ,
ଉତରକୁ ଯିବାପାଇଁ ପଡ଼ନ୍ତି କବାଟ ।

ଦେଖିଲି ଯୋଡ଼ା କବାଟ ଅଳ୍ପ ଅଛି ମେଲି,
ବେତ ଯେନ୍ତ ଦ୍ୱାରେ ଛିଡ଼ା କଳନ୍ଦୁରୀ ରେଲି ।
ପଇସେ ପାଇଲେ ବାଟ ଦେଉଛନ୍ତି ଛାଡ,
ନଇଲେ ଯାତ୍ରିଏ ଖାଉଛନ୍ତି ବେତମାଡ ।
ଭିତରେ ପଶିଲି କେହ୍ମରୂପେ ଠେଲାଠେଲି,
ଧୂଳିଆ ପଣ୍ଡାଏ ତହିଁ ବସିଛନ୍ତି ଠାଳି ।
ମାଳ କରି, ଖେଳ କର, ଡାକୁଛନ୍ତି ପଣ୍ଡେ,
ଦେଖିଲି ଯେ କାରବାର ଛିଡ଼ା ହୋଇ ଦଣ୍ଡେ ।
ଈଶ୍ୱରେ ତୁଷ୍ଟ ନୁହେ ଏମାନଙ୍କ ମନ,
ଧରନ୍ତି ଅଣ୍ଟରେ ଚିପି ଯାତ୍ରିଙ୍କ ଜୀବନ ।
କାରବାର ଦେଖି ଏଥି ପଇସା କଉଡ,
ମୋ ମନରୁ ଭକ୍ତିଭାବ ଗଲା କାହିଁ ଉଡ ।
ମନେ କଲି ଏ ପୂଜାଏ ଦେବତି ପଣ୍ଡାଙ୍କୁ,
କି କହିବ ତୀର୍ଥସ୍ଥାନେ ନାହିଁ ରହିବାକୁ ।
ହାୟ ହାୟ ଏତେ ବାଟ ଆସିଥିଲି ଧାଇଁ
ପ୍ରଭୁଙ୍କ ଦର୍ଶନ କରି ମୁକ୍ତିଲାଭପାଇଁ ।
ସେବକ ହାତରେ ହେଉଅଛି ହରବର,
ଆଗରେ ପଇସା, ପଛେ ଦର୍ଶନ ଖବର ।
ପ୍ରଭୁଙ୍କ ଦର୍ଶନ କରୁ ହୁଅନ୍ତି କୃତାର୍ଥ,
ସେବକ ହାତରେ ପଡ ସବୁ ହେଲା ବ୍ୟର୍ଥ ।
କେବଳ ନୁହନ୍ତି ପଣ୍ଡେ ଅଛନ୍ତି ଅଢ଼ୁଆ,
ଲମ୍ପଟଙ୍କ ଜୁଆଚୋର ଗଣ୍ଠିକଟା ପୁଆ ।
ଲଜ୍ଜା ମାଡୁଅଛି ସବୁ କଥା ଲେଖିବାକୁ,
ନ ବୁଝି ପାରିବ କେହ୍ମ ନ ଆସି ଏଠାକୁ ।

ତୁମ୍ଭକରେ ବୁଝ ଏ ସ୍ଥାନର କାରବାର,
ତୀର୍ଥସ୍ଥାନ ହୋଇଅଛି ନରକ ଗୁଲ୍‌ଜାର !
ଦେଖି ଦେଖି କଥା ସବୁ କମ୍ପୁଅଛି କାୟ,
ଧନ୍ୟ ଧନ୍ୟ ଧନ୍ୟ ପ୍ରଭୁ ଧନ୍ୟ ତୁମ୍ଭ ମାୟା !
ଆନ ଅଡ଼େ ଦେଖ ଭକ୍ତମାନଙ୍କର ମେଳ,
ସ୍ୱର୍ଗୀୟ ପବଣ ଭାବ କରୁଛନ୍ତି ଖେଳ !
ପଡ଼ୁଛନ୍ତି ନେତ୍ର ବୁଜି ଆନ ବସ୍ତ୍ରବରେ
ବସ୍ତ୍ରୁଙ୍କ ସହସ୍ର ନାମ ଗଦ୍‌ଗଦଚିତ୍ତରେ ।
ଗାଏ କେହୁ ଜୟଦେବ ମନ କରି ସ୍ଥିର,
ପ୍ରଳୟ-ପୟୋଧି-ଜଳେ ମୀନର ଶରୀର ।
ସର୍ବାଙ୍ଗ ପୁଲକପୂର୍ଣ୍ଣ, ନେତ୍ରେ ବହେ ଧାର,
ପ୍ରଭୁଙ୍କ ଶ୍ରୀମୁଖ ମଗ୍ନ ହେବ ନେତ୍ର ତାର ।
ପ୍ରଭୁଙ୍କ ଶ୍ରୀଅଙ୍ଗ ଦଣ୍ଡେ କରି ନିରୀକ୍ଷଣ
ବାହାରିଲ କରିବାକୁ ବେଢ଼ା ପ୍ରଦକ୍ଷିଣ ।
ଜୁହାରଣ କାଳ ଚତୁର୍ଭୁଜ କଳ୍ପବଟେ
ଉପସ୍ଥିତ ହେଲ ମୁକ୍ତିମଣ୍ଡପ ନିକଟେ ।
ଦେଖିଲ ଯେଠାରେ ଲାଗିଅଛି ଗଣ୍ଡଗୋଳ,
ପାଠ ଛାଡ଼ି ଅଣ୍ଡାଖୋଷା ହୋଇଅଛି ମୂଳ ।
ପଣ୍ଡିତଙ୍କ ଗାଦି ବୋଲି ଲଗାନ୍ତି ଯେ ମଥା,
ତାଙ୍କ ବୃତ୍ତି ଧରି କହୁଥାନ୍ତି ନାନା କଥା ।

ଅଧଲାଏ ପାହୁଲାଏ ଯାତ୍ରା ଛାଡ଼ି ଦିଅ,
ଗୁଣିବ ସହସ୍ର ନାମ, ପାଦକଞ୍ଜ ନିଅ ।
ହାୟ ରେ ଏହି କି ସେହି ମୁକ୍ତିମଣ୍ଡପ,
କରୁଥିଲେ ବିଦ୍ୟାବନ୍ତ ଯାହା ନାମ ଜପ !

ଯେଉଁଠାରେ ହେଉଥିଲା ପଣ୍ଡିତଙ୍କ ମେଳା,
ଏବେ ଦେଖ ସେ ସ୍ଥାନରେ ଠକ ଭେଳା ଭେଳା ।
ବଦେଶୀ ପଣ୍ଡିତ ଯହିଁ ହେଉଥିଲେ ଚୂର୍ଣ୍ଣ,
ଠକ ଜୁଆଂଚୋର ତହିଁ ମେଲୁଛନ୍ତି ତୁଣ୍ଡ ।
କାହିଁ ଗଲା ବେଦପାଠ କାହିଁ ଶାସ୍ତ୍ରାଳାପ,
ଏବେ ତହିଁ ବିରାଜିତ ମୂର୍ତ୍ତିମନ୍ତ ପାପ ।
ପଣ୍ଡିତମାନଙ୍କ ସ୍ଥାନ ଖାଲି ଅଛି ପଡ଼ି,
ଯାବନ୍ତ ଶାଦନଝଡ଼ା ପାଉଛନ୍ତି ରଡ଼ି ।
ହେଉଥିଲେ ଯାହା ମୁକ୍ତିମଣ୍ଡପ ବ୍ୟବସ୍ଥା,
ଭରତ ମଧ୍ୟରେ ହେଉ ନ ଥିଲା ଅନ୍ୟଥା ।
ହାୟ ହାୟ ! ସେ ପଣ୍ଡିତ ଜଣେ ମଧ୍ୟ ନାହିଁ
ମୁକ୍ତିମଣ୍ଡପକୁ ଲେ ବତ ଦେବାପାଇଁ !
ଆହା ଚନ୍ଦ୍ର ରାଜଗୁରୁ, ହା ବାସୁ ପାଢ଼ୁଶୀ,
ଦ୍ୱନା ସହି କଣି ଥିଲ ଓଡ଼ଶାନବାସୀ ।
ହା ହା ଲୋକନାଥ ବ୍ରହ୍ମା ବ୍ରହ୍ମା ଅବତାର,
ତୁମ୍ଭେ ଗଲ କେ କହିବ ଷଟ୍‌ଶାସ୍ତ୍ର ବିଚାର !
ହା ହା ମୃତ୍ୟୁଞ୍ଜୟ ମିଶ୍ର ପୌରାଣିକବର,
କୁଣ୍ଡଳମଣ୍ଡିତ ସଭାମଣ୍ଡନ ସୁନ୍ଦର !
ଗୋପୀନାଥ ବାସୁଦେବ ଯାଇଛନ୍ତି ସ୍ୱର୍ଗ,
ତାଙ୍କ ସ୍ଥାନେ ବସିଛନ୍ତି ଠକ ବଂଚ୍ଚବର୍ଗ !
ଜଗବନ୍ଧୁ ମହାପାତ୍ର ହେଲେ ଅନ୍ତର୍ଦ୍ଧାନ,
କେ କହିବ ତୁମ୍ଭେ ଭାଗବତ ଟୀକାମାନ !
ଦୀନବନ୍ଧୁ ମିଶ୍ର କବିଚନ୍ଦ୍ରଶିରୋମଣି,
ହଜ ଯାଇଛନ୍ତି ମୁକ୍ତିମଣ୍ଡପର ମଣି ।

ମୃତ୍ୟୁଞ୍ଜୟ ତର୍କପଞ୍ଚାନନ ଗଲେ କାହିଁ,
ନ୍ୟାୟଶାସ୍ତ୍ର ସଭାକୁ ତ ଆଉ ଜଣେ ନାହିଁ ।
ରଘୁ ମିଶ୍ର ବିନାୟକ ମିଶ୍ର ଜୟ ରଥ,
ଯଶ ରଖି ଗଲି ଯାଇଅଛ ସ୍ୱର୍ଗପଥ ।
ମୁକ୍ତିମଣ୍ଡପକୁ ଜୁହାରୁଛୁ ହାତ ଯୋଡ଼ି,
କର୍ପୂର ଯାଇଛି କନାଖଣ୍ଡ ଅଛି ପଡ଼ି ।
ସଦାଶିବ କାବ୍ୟକଣ୍ଠେ ରଖିବେ ମନରେ,
ଅପଣ ନାହାନ୍ତି ଏହା ପଣ୍ଡିତ ଭାବରେ ।
ଭାଷାତତ୍ତ୍ୱ ବୁଝିବାରେ କାଟୁଛନ୍ତି କାଳ,
କାହିଁକି ବହିବେ ମୁକ୍ତିମଣ୍ଡପ ଜଞ୍ଜାଳ ?
ଓଳଟି ଓଲଟି ନନା ଦାଅ ବାଟ ଘାଣ୍ଟି,
ଦେଖନ୍ତୁ ପଛରୁ ପଣ୍ଡେ ଅସୁଛନ୍ତି ମାଡ଼ି ।

ଦର୍ଶନ ସକାଶେ ଗଲି ବମଳା ମନ୍ଦରେ,
ତହିଁ ମଧ୍ୟ ପଡ଼ିଗଲି ସେବକ ଫନ୍ଦରେ ।
ଦେଖିଲି, ଜଳିଛି ଘୃତ-ଦୀପ ଧାଡ଼ି ଧାଡ଼ି,
ଘିଅରେ ହେଲଣି ପୂର୍ଣ୍ଣ ସେବକଙ୍କ ଦାଢ଼ି ।
ମୋ ଅଣ୍ଟାରେ ଥିଲା ଯେତେ ପଇସା କଉଡ଼ି,
ମହାମାୟା ମାୟାବଳେ ଗଲା ତାହା ଉଡ଼ି !
ହେ ସେବକେ, ଲଗ ନାହିଁ ଆଉ ମୋ ପଛରେ,
ନ ହେଉ ଦର୍ଶନ ଫେରେ ଯାଉଅଛି ଘରେ !

ଅରୁଣ ସ୍ତମ୍ଭରେ ମୋର ପଡ଼ିଲା ନଜର,
ମୂଳଠାରୁ ମୁଣ୍ଡଯାଏ ଖଣ୍ଡିଏ ପଥର ।

କାହାର ଏ କାର୍ତ୍ତି ମୁହିଁ ବୁଝିଲି ପଚ୍ଛର,
କଣାରକୁଁ ଆଣିଥିଲେ ବାବା ବ୍ରହ୍ମଚ୍ଛାରୀ ।
ବାବୁମାନେ ଦେଶ ଦେଶ ଥରେ ଅଛି ମଳି,
ଠାଗକା ଓଡ଼ିଆ ଥିଲେ କେମନ୍ତେ କୌଶଳୀ ।

ମଙ୍ଗୁମଣ୍ଡ ଦେଖିଲେ ଯେ ଭଙ୍ଗାରୁଜା ଘର,
ରେଲ ରେଲ ବିବାଦରେ ଖେଲ ଘରଖାର ।
ଦେଖିଲି ଏମାର ମଠେ ଭାରି ଧୂମଧାମ,
ଟଙ୍କା ସୁନା ଗଦା ଗଦା ଯେସନ୍ତେ ଲକ୍ଷ୍ମୀଧାମ ।
ସୁଦର୍ଶନ ଦାସେ ଥିଲେ ଏ ମଠେ ମହନ୍ତ,
ତାଙ୍କ ପର ଥିଲ ନାହିଁ ଦାତା ଦୟାବନ୍ତ ।
ମହନ୍ତ ମୋହନ ଦାସ ଉତ୍ତରାଧିକାରୀ,
ବଟେଚ୍ଛ ତୋଟାରେ ଥିଲ ତାଙ୍କ ମନ ଭାରି ।
ପଣସ କଦଳୀ ଆମ୍ବ କଖାରୁ ନଡ଼ିଆ,
ବଗିଚ୍ଛରେ ଜମି ଗୁଣ୍ଡେ ନ ଥିଲ ପଡ଼ିଆ ।
ବଗିଚ୍ଛର ଫଳ ହୁଏ ଚ୍ଛରଅଣ୍ଡେ ବଣ୍ଟା,
ପରଚିବା ଲୋକଙ୍କର ଯୋଗି ହୁଏ ଅଣ୍ଟା ।
ଏବେ ସେ ମଠରେ ରଘୁନନ୍ଦନ ମହନ୍ତ,
ବ୍ୟବହାର ବୁଝିବାକୁ ବଡ଼ ବୁଦ୍ଧିମନ୍ତ ।
ଅପଣା କଥାଟି ବୁଝିବାରେ ନୁହନ୍ତି ଢ଼ରର,
ଲକ୍ଷ୍ମୀର ଭଣ୍ଡାର ପର ଟଙ୍କା ସୁନା ଟେର ।
ଅପଣା ପେଟଟି ଭଲ ଚଳାନ୍ତି ମହନ୍ତ,
ଯାହ ନିଏ ଦଧ୍ୟ ମିଳ ଅଛନ୍ତି ଟେମନ୍ତ ।

ମନ୍ଦିର ଦକ୍ଷିଣ ପାର୍ଶ୍ୱେ ଅଛୁ ଭଲ ମଠ,
ଗାଲବ ଋଷିଙ୍କ ଗାଦ୍ଦି ଦିବ ମହାପୀଠ ।

ଏ ମଠ ମହନ୍ତ ଥିଲେ ରାମଦାସ ଯତି,
ମରହଟ୍ଟା ତାଙ୍କୁ କରିଥିଲେ ସେନାପତି ।
ଜବରଦସ୍ତ ଲୋକଟା ସେ ଖୁବ ଥିଲା ବଳି,
ଅଧିକାର କରିଥିଲେ ଉଡ଼ିଶାମଣ୍ଡଳି ।
ଜଗନ୍ନାଥ ସିଂହାସନେ ଭୈରବ ମୂରତି
ପୂଜା କରୁଥିଲେ ମିଳି ଶୈବ ଶାକ୍ତ ଯତି ।
ଶ୍ରୀରାମ ମହନ୍ତ ସେହି ବିଗ୍ରହକୁ ଭାଙ୍ଗି
ଖଣ୍ଡ ଖଣ୍ଡ କରି ସମୁଦ୍ରକୁ ଦେଲେ ଫିଙ୍ଗି ।
ଏ ମଠର ଆୟ ବରଷକୁ ଲକ୍ଷେ ଟଙ୍କା,
କାହାକୁ ନ ଥାଏ ତେଣୁ ମହନ୍ତଙ୍କ ଶଙ୍କା ।
ଶ୍ରୀରାମ ଉତ୍ତାରେ ହେଲେ ଯେ ସବୁ ମହନ୍ତ,
ସମସ୍ତେ ଧାର୍ମିକ ଶୁଦ୍ଧମତି ଗୁଣବନ୍ତ ।
ସେଥି ମଧ୍ୟେ ଥିଲେ ଜଣେ ହୟଗ୍ରୀବ ଦାସ,
ଭାରି ପାଜି ଶୟତାନ ବଡ଼ ବଦମାସ ।
ଏବେ ସେ ମଠରେ ଲୋକ ଯାଇଛନ୍ତି ପୂରି,
ଜବରଦସ୍ତ ମୋଟା ମୋଟା ଲୋକ ଭୋଜପୁରି ।
ଚତୁର୍ଭୁଜ ଏବେ ମାତ୍ର ବସିଛନ୍ତି ଗାଦି,
ଭଗବାନ ଦାସେ ହୋଇଅଛନ୍ତି ବିବାଦୀ ।
ମହନ୍ତ ଉତ୍ତରପାର୍ଶ୍ୱ ଛନ୍ତି ତଳେ ତଳେ,
ମଠ ସବୁ ଟଙ୍କା ଉଡି ଯାଉଛି କୌଶଳେ ।
ଚତୁର୍ଭୁଜ ମହନ୍ତ ଯେ ଭୋଜପୁରି ଲୋକ,
ତାଙ୍କ ହନୁମଠେ ଭୋଜପୁରିଅଙ୍କ ଠେକ ।
ପୁଛାରି କୁଠାରି ଥାନାପତି ସନ୍ଦେଶୀ,
ସିପାହି ପିଅଦା ଆଦି ସବୁ ଭୋଜପୁରୀ ।

କି କହିବି ଆଉ ଏମାନଙ୍କ ଗୁଣପଣ,
'ଡପଲ୍ ଡୋକର କି ମୋକର' ଅଛି ଜଣା !

ହୁମର୍କ୍ତଷ୍ଟ ପାଠକୋଷ୍ଠି ନଯୋଗନାମ୍ଭୁକ,
ଛନ୍ଦଶାନଯୋଗ ମଧ୍ୟେ ଭ୍ରାର ବଡ଼ଲୋକ ।
ଅଛା ବୁଗିର ଚଳୁଅଛି ଖୁବ ଠାଣେ,
ବାପ ଅରଜଲ ଜମି ବିକ ମାଣେ ମାଣେ !

ନକଟେ ବଳିଅ ଗୁରୁ କୋଠାଘର ଗୃହ
ମନେ କଲି, ଅହା ଦାତାଷଣ୍ଡ ଗଲ କାହିଁ !

ଜୟ ଜୟ ଜୟ ଜୟ ଡୋଠା ଗୋପୀନାଥ,
ମହାପ୍ରଭୁ ଓଳଗୁଛି ଯୋଡ଼ି ବେନି ହାତ ।
ଅହେ ଗୋପୀନାଥେ କହ ପାଇବି ସନ୍ଧାନ,
ଶ୍ରୀ ଚୈତନ୍ୟ ଏଥି ପରି ହେଲେ ଅନ୍ତର୍ଦ୍ଧାନ ?
ନିଶାଣ ଉଡ଼ୁଛି ଗୋପୀନାଥଙ୍କ ମନ୍ଦରେ,
ରାମଚନ୍ଦ୍ର ଆଢ୍ୟ ବସ୍ତ୍ର ରହିଛି ପୃଥ୍ୱୀରେ ।

ରାଘବଦାସଙ୍କ ମଠେ ଲାଗିଛି ମାମଲା,
ମଠ କାମେ ମହାଫିସ ଦେଉଛନ୍ତି ସଲା ।
ଖାଇଲେଣି ଠଙ୍କା ସବୁ ଓକୀଲ ମୁକ୍ତାର,
ବଳୁଆ ଶାଗୁଣା ଯେହ୍ନେ ଖାଆନ୍ତି ମୁର୍ଦ୍ଦାର ।
ନାରାୟଣ ଦାସେ ଥିଲେ ଖୁବ ମଜବୁତ,
ଶେଷକାଳେ କାମ କିନ୍ତୁ କଲେ ଅଦ୍ଭୁତ ।
ହେଲେ ସଦ୍ୟ ଭବ୍ୟ ଛାଡ଼ି ମହନ୍ତ ଖବର,
ଅନାହାରି ମେଜେଷ୍ଟର କମିଟି ମେମ୍ବର ।

କିଛି କହ ଗଲେ ନାହିଁ ମଠ ବନ୍ଦୋବସ୍ତ,
ତାଙ୍କ ଅନ୍ତେ କାମ ବଗିଡଲା ଦୁରବସ୍ତ ।
ଶ୍ରୀମଧୁସୂଦନ ଭଗବତ ଦୁଇ ଚେଲା,
ମାମଲା କରନ୍ତେ ମଠ ଛାରଖାର ହେଲା ।
ଠିକାବଲେ ଭଗବତ ପାଇଲେ ସମ୍ପଦ,
ଦୁନ ହେଲେ ମଧୁ ଅନ୍ତେ କର କାଳୀପଦ ।
ମଲେ ଭଗବତ ରଖି ନାବାଳକ ଚେଲା,
ମଠକାମ ସବୁ ମହାଫିସ ହାତେ ହେଲା ।

ଓଢଅ ମଠରେ କାମ ଚଳୁଅଛି ଭଲ,
ଓଡଶା ରଜାଙ୍କ ଏହା ଷୋଳଣା ଦଖଲ ।
ଅଉ କେହି ଲୋକ ନାହିଁ ମହନ୍ତ ମଠରେ,
ମାମଲା ଯେତେକ ଅଛି ରଜାଙ୍କ ହାତରେ ।
ବୀରକେଶରୀଙ୍କ ମାତା ବସାଇ ଏହାକୁ
ଜମି ବାଡି ଖଞ୍ଜିଛନ୍ତି କାମ ଚଳିବାକୁ ।
ବର୍ତ୍ତମାନ ମହାଫିଯ ବୃଝୁଛନ୍ତି ମଠ,
ଚଳୁଅଛି କାମ, କିଛି ନାହିଁ ଶଠ ଶଠ ।

ଶଙ୍କରାଚାର୍ଯ୍ୟଙ୍କ ମଠ ନହାଇ ପୁରୁଣା,
ବେଶ ଚଳୁଅଛି କାମ କିଛି ନାହିଁ ଊଣା ।
ଶ୍ରୀଶଙ୍କର ଦାମୋଦର ତୀର୍ଥସ୍ୱାମୀ ଦଣ୍ଡୀ,
ବଦ୍ୟା ବୁଦ୍ଧି-ସରଳତା ଗୁଣେ ଛନ୍ତି ମଣ୍ଡି ।
ନ ବୁଝ ଏହାଙ୍କୁ ତୋଲପେଟୁଆ ମହନ୍ତ,
ଅଳ୍ପ ଲୋକ ତାଙ୍କ ପର ଛନ୍ତି ଗୁଣବନ୍ତ ।

କାହିଁ ଗଲ ହେ ଶଙ୍କରାନନ୍ଦ ଗୁଣମଣି,
କେତେ ଖୋଳି ଯାଇଅଛ କୂପ ପୁଷ୍କରଣୀ ।
ଶିବାନନ୍ଦ ସରସ୍ୱତୀ ଗଲ ଯମାଳୟ,
କାହିଁ ଗୌରଚନ୍ଦ୍ର ପୁଷ୍କରଣୀ ଦେବାଳୟ ।

ହେ ମାନ ଷଣ୍ଢିଆ କାହିଁ ରହିଅଛ ଚର,
ଖୋଳାଇ ଭୃଙ୍ଗାଗ କୂପ ନିର୍ମାଇ ମନ୍ଦର ।
ଶ୍ରୀଗୋପାଳ ପ୍ରଭହାସି କଥା କରୁ ଏତେ,
ଖୋଳାଇପକାଅ ଅଜ କୂପ ଗୋଟାକେତେ ।

ସଦାଶିବ ମିଶ୍ରେ ମହା ମହାଉପାଧ୍ୟାୟ,
ଯେତ ଏକା ଲୋକଟାଏ ସଦାଶିବ ପ୍ରାୟ ।
ଅହେ କାବ୍ୟକଣ୍ଠେ, ଭଲ ବୁଝିଛୁ, ଆପଣେ,
ମୁକ୍ତିମଣ୍ଡପକୁ ଏକା ଶୋଭା ପାଅ କଣେ ।
ଶୁଣାଶୁଣି କଥା—ଲେଖୁଛନ୍ତି ସ୍ମୃତିଶାସ୍ତ୍ର,
ଅବଶ୍ୟ ଅବଶ୍ୟ ଅପଣ ତ ଯୋଗ୍ୟପାତ୍ର ।
'ନଷ୍ଟେ ଗତେ ତ୍ରୁକ୍ତଗତେ' ପରାଶର ବାଣୀ—
ସତ୍ୟ ଧର୍ମଶାସ୍ତ୍ର ବାକ୍ୟ ନଷ୍ଟେ ଥିବ ଜାଣି ।
ଗଲାଣି ଶଗଡ଼, ଏବେ ଚଢ଼ ରେଳବାଇ,
କେଖ ଶାସ୍ତ୍ର ଦେଶ କାଳ ପାତ୍ର ଅନୁଯାୟୀ ।
ବୁଝି ସୁଝି ନ ଲେଖିଲେ, ରଖିବେ ମନରେ,
ଆପଣଙ୍କ ଶାସ୍ତ୍ର ଗୁଞ୍ଜା ରହିବ ଗୃହରେ ।

ମାଗୁଣି ମିଶ୍ରକୁ କେହି ନ ପଚାରେ ଥରେ,
ଏକୁଟିଆ କାହିଁ ପଡ଼ି ରହନ୍ତି କୋଣରେ ।

ମୂଳ ମୃତ୍ତିକା କି ଗଣା ହେବ ଔଷଧରେ,
ଗୋଷ୍ଠାଏ ଲେବଲ ଅଙ୍ଗା ଶିଶି ନାହିଁ ଘରେ !
ମିଶ୍ରେ ଶିଖିଥିଲେ ବାଇକାର୍ବୋନ ପଟାସ୍,
ଆଗେ ମୁଁ ବୋଲନ୍ତୁ ଆଚ୍ଛା ଡାକ୍ତର ସାବାସ !
ଯେ ରୋଗୀକୁ ଡାକ୍ତର ଦଅନ୍ତୁ ଜବାବ,
ସେହିଠାରେ ମିଶ୍ରଙ୍କର ଦେଖିଛୁ ପ୍ରଭାବ ।
ଯେତେ ହେଉ ଯେଟା ହେଲା ନେଟିଭ୍ ଟ୍ରିଟ୍ମେଣ୍ଟ,
ନ ଡାକ ମିଶ୍ରଙ୍କୁ ହେଉ ପଛକେ ଅର୍ଜେଣ୍ଟ ।
ଆଚ୍ଛା କବିରାଜ ବୋଲି ଅଛୁ ନାମଡାକ,
କାହିଁ ତ ଦେଖିଲି ନାହିଁ ବୁଲି ଦେଶଯାକ ।

ଶିଖିବାକୁ ଇଚ୍ଛା ଥିଲା ଚଳନ୍ତି ଓଡ଼ିଆ,
ସାହିତ୍ୟରେ ଭେଟିଗଲି 'ଗୋପାଳପୁରିଆ' !
କିପାଇ ମରିବି ବୁଲି ବୁଲି ଗାଁଏ ଗାଁଏ ?
ଭାଗବତଟୁଙ୍ଗୀଠାରୁ ଜନା ପାଞ୍ଜିଯାଏ—
ଘର କଥା ଘର ଭାଷା ଠିକ ଠିକ ଲେଖା,
ଓକିଲଙ୍କ ଠକପଣ ଲେଖା ନାହିଁ ଏକା ।
ପଦ—ଦୁଇ ଚାରି ପଦ ଯାଇଛନ୍ତି ଗାଇ,
ତାହା ମଧ୍ୟ ଅପଣାକୁ ବଞ୍ଚାଇ ଲୁଞ୍ଚାଇ ।
ପାଇଲି ଅସଲ ଚିଜ,—ହେଉ ତାହା ଛଡ଼ା
ଜବୋଲ ଓଡ଼ିଆ କଥା ଥିଲୁ ମୋର ଲୋଡ଼ା !
ପଢ଼ିଲି ସାହିତ୍ୟ ବସି ପଦ୍ମଚରଣ—ଆଜ,
ଠିକ୍ ଠିକ୍ ଗାଇ ଯାଇଛନ୍ତି ପଦ୍ମରାଜ ।

ଡ଼ିଏଲ ମିଷ୍ଟର ବି. ଏନ୍. ମିଶ୍ରା ଗୁଡ଼୍‌ବାଇ ଗୁଡ଼୍‌ବାଇ,
ଭଲ ଆଦର୍ଶଟା ଏକା ଦେଲ ତ ଦେଖାଇ ।
ଯାକି-ତୁଣ୍ଡିଚପା ପଣ୍ଡା ଯିବ ବଳାତକୁ,
ସ୍ୱପ୍ନରେ କେ ଆଣିଥିଲା ଏ କଥା ମନକୁ ?
ଶୁଣାଶୁଣି—ତୁମେ କର ଫ୍ଲିଡ୍ ହାଇକୋଟେ,
ହେବ ବାରିଷ୍ଟର ପର ବାରିଷ୍ଟର ଗୋଟେ ।
ଯେତେକ ମାମଲା ଦେଇଥିଲେ ଅପିଲେଣ୍ଟ,
ଗେଇନ୍ କରଦେଲ କେସ୍ ଏଇଟି ପର୍‌ସେଣ୍ଟ ।
ଶଗ୍‌ଡ଼ା ମୁଁ କରୁଅଛି ପ୍ରାର୍ଥନା ଏତେକ,
ହାଇକୋଟରେ ରଖିଦେବ ଏ ଜାତିର ଟେକ ।
ଆଇପେ ମିଷ୍ଟର୍ ମିଶ୍ରା ଏଗେଇନ୍ ଗୁଡ଼୍‌ବାଇ,
ଦୁଃଖିନୀ ଜନମଭୂମି ନ ଭୁଲିବ ଭାଇ ।

ଚାହେଁ କେ ଅନନ୍ଦ ମିଶ୍ରେ ଗରବ ବ୍ରାହ୍ମଣେ,
ଚିନେରା କେ ଅଛି ବୋଲ ଉତ୍କଳରେ ଜଣେ !
ବଡ଼ ଲାଟ ବାହାଦୁର ଥିଲେ ତାଙ୍କୁ ଦେଖି,
ପାର୍ଲିମେଣ୍ଟ ସାର୍ଟିଫିକେଟ ଦେଇଛନ୍ତି ଲେଖି ।
ଆସିଥିଲେ ଲୁସାଇ କର ଭାରତେ ସମ୍ରାଟ,
ତେତେବେଳେ କରଥିଲା ତାଙ୍କ ଗୁଣ କାଟ ।
ମିଶ୍ରେ ମନ ଦେଲ୍ଲ ମୂର୍ତ୍ତିଟା ଏ ଦେଲେଂଗଡ଼ି,
କଳାଚର କେତେ ମୂର୍ତ୍ତି ଯିବ ଗଡ଼ାଗଡ଼ି ।
ଇଚ୍ଛା ହାତେ ମିଶ୍ରେ ମନ ସାହସ ବଳରେ .
ଛଅ ବର୍ଷ ପଢ଼ିଥିଲେ ଅର୍ଟ ଷ୍କୁଲରେ ।
ଉତ୍କଳରେ କେହ ତାଙ୍କୁ ନ ବୋଲେ ସାବାସ,
ମିଶ୍ରଙ୍କର ଘରେ ଅଧେ ଦିନ ଉପବାସ !

ସଦାଶିବ ନୀଳକଣ୍ଠ ସନ୍ତ ସନ୍ନ୍ୟାସୀ,
ଜଗତ ମଙ୍ଗଳେ ଗୋପବନ୍ଧୁ ବ୍ରଜବାସୀ,
ଗୋଦାବରୀ ଉପକୂଳ ନୃସିଂହ ଉଦାର,
କୃପାସିନ୍ଧୁ କୃପାନିଧି ଜନହିତକର—
କାର୍ଯ୍ୟ ସାଧନରେ ଅବତୀର୍ଣ୍ଣ ଧରାଧାମେ,
ସମବେତ ସେମାନେ ତ ସତ୍ୟବାଦୀ ଗ୍ରାମେ ।
ଜ୍ଞାନଗଙ୍ଗା ପ୍ରବାହିତା ଉଦୟ ତ ମୂଳ,
ଉଦ୍ଧାରବେ ଭଗୀରଥ ସମାନରେ କୂଳ ।
ବହୁ ଯୁଗଯୁଗାନ୍ତର ତପସ୍ୟାର ଫଳେ
ଜନ୍ମିଲେ ନିଃସ୍ୱାର୍ଥ ଯୋଗ୍ୟପୁତ୍ର ଏ ଉତ୍କଳେ ।
ସମବେତ ସମବେତ ଚତୁର୍ବର୍ଗ ମୂରତି,
ତଡ଼ିଦେବେ କୁସଂସ୍କାର ଦୁର୍ନୀତି ଦୁର୍ଗତି ।
ସତ୍ୟବାଦୀ ଗ୍ରାମେ ଦେଖି ବାଣୀର ମନ୍ଦିର,
ଭାବି ଭାବି ମନ ମଧ୍ୟେ ବୁଝିଲଣି ସ୍ଥିର ।
ଇତିହାସୁଁ ଶୁଣା—ଥିଲା ନାଳନ୍ଦା ବିହାରେ,
ସତ୍ୟବାଦୀ ଗ୍ରାମେ ଅଛିବ ତ ଦେଖିବାରେ ।

ପାରିକୁଦ କଥା କିଛି ନ ପାରିଲି ଲେଖି,
ତୁମ୍ଭେ ଆପେ ନିଜେ ଅସି ବେଳେ ଯାଅ ଦେଖି ।
ଡର ନାହିଁ କିଛି ବାଟଖରଚ ସଙ୍କାଶେ,
ପାଇଯିବ ସବୁ ପନ୍ଥସ୍ଥଳେ ରାଜା ପାଶେ ।
ଅଧିକା ପାଇବ ବ୍ରହ୍ମପୁରୀ ପାଠଯଥା,
ଦେଖିବ ଆଖିରେ ରାଜା ଦାକ୍ଷିଣ୍ୟ କଥା ।
କାଇଲା ପଡ଼ିବ ଯେବେ ବାଟଂ ଚାଲିବାରୁ,
ଔଷଧ ପାଇବ ତତକ୍ଷଣେ ରାଜାଠାରୁଂ ।

ରାଜା ଅଟେ ଜଣେ ବୈଦ୍ୟ, ଗଡ଼ିବ ସକାଶେ
ନବୀନ ଔଷଧ ଆଣି ରଖିଥାନ୍ତି ପାଶେ ।
ବାଣ୍ଟନ୍ତି ଔଷଧ ନେଇ ଦୁଆରେ ଦୁଆରେ,
ଏଡ଼େ ମଜା କଥା ଦେଖିଛ କି କେଉଁଠାରେ ?
ଦାତା ପରଉପକାରୀ ସୁଶୀଳ ପଣ୍ଡିତ,
ମିଷ୍ଟଭାଷୀ ଧୀର ନାନାଗୁଣରେ ମଣ୍ଡିତ ।
ଓଡ଼ିଶା ଉନ୍ନତି କରିବାକୁ ଥୋଡ଼ା ଥୋଡ଼ା
ଏହିପରି ରାଜା ଅଛି ପୃଥ୍ୱୀ ଭୂଇଁ ଜୋଡ଼ା ।
ଅଳମଣ୍ଡ ବସ୍ତରେଣ ନନ୍ଦାନ୍ତ ଅଧୀନ,
ଶ୍ରୀ ଗୋପାଳଚୂଡ଼ାମଣି ତର୍କପଞ୍ଚାନନ ।

ଧନ୍ୟ ଧନ୍ୟ ମହାଦେବୀ କାଞ୍ଚନମଞ୍ଜରୀ,
ଖଲ୍ଲିକୋଟ ଆଠଗଡ଼ ରାଜରାଜେଶ୍ୱରୀ ।
ଉତ୍କଳ ଲଲନାକୁଳେ ରଖିଲ ଭାରତ,
ଦେଉନ୍ତୁ ତୁମ୍ଭଙ୍କୁ ବର ଲକ୍ଷ୍ମୀ ସରସ୍ୱତୀ ।
ବାକୁଥିବ ଖଲ୍ଲିକୋଟ ନାମରେ ନାଗରୀ,
କଲେଜ ସକାଶେ ଲକ୍ଷେ ଟଙ୍କା ଦେଲେ ପରି ।
ମାତୃଭାଷାପାଇଁ ପୁଣି ଅଛ ତୁମ୍ଭ ଟାଣ,
ଚିରକାଳ ଏହି କୀର୍ତ୍ତି ରହିଗଲା ଜାଣ ।

କ୍ଷୁଦ୍ର ଭଗବତୀ ଚଟ୍ଟୋପାଧ୍ୟା ଦୁହେଁ ଭାଇ
ବସିଛନ୍ତି ଗଞ୍ଜାମରେ ଆପଣ ଜନ୍ମାଇ ।
ଅଚ୍ଛା ନାମ କରିଗଲେ ତେଲଙ୍ଗା ଦେଶରେ,
ବେଙ୍ଗାଲି ବାବୁଙ୍କ ନାମ ଶୁଣ ଘରେ ଘରେ ।

ଓଡ଼ିଅ ବଙ୍ଗାଳି ଆଉ ତେଲଙ୍ଗା ମରହଟି,
ଗୃହ ଜାତି ଏହିଠାରେ କରନ୍ତନ୍ତି ଖଟି ।
କେତେ ଅଛନ୍ତି ବାବୁ କେତେ ପାଣ୍ଡୁଗ୍ରାବୁ,
କେହି ପିଇଯାଏ କାଫି, କେହି ପିଏ ଗୃଭୁ ।
ସନ୍ଧ୍ୟାବେଳେ ଅନେକଙ୍କ ଲାଗିଥାଏ ଠେଲ,
ଜଣାଯାଏ ଏଠା ହେବ ପବ୍ଲିକ ହୋଟେଲ ।
Chatterjee brothers ଅଛି କିଛି ଦରକାର,
କରିବ କି ଏହି ଦେଶପାଇଁ ଉପକାର ?
ଓଡ଼ିଆମାନଙ୍କ ଯୋଗେ ନାହିଁ କିଛି ଗୁଣ,
ଓଡ଼ିଶା ଦେଶକୁ କେବେ ନ କରିବ ଘୃଣା ।

ବିଦ୍ୟାଭୂଷଣେ ତ କଲେ ଏକପରିବ୍ରତ,
ଜଣାଗଲା ବାନ୍ଧିବାରିବ କିଛି ଭାଷାତତ୍ତ୍ୱ ।
ଅନ୍ଧ୍ରଭାଷା ଯେବେ ଯୋଗିହେବ ତାବକାଳ,
କେ ବୁଝିବ ବୋଲି ଭଲ ଉତ୍କଳ ଜଞ୍ଜାଳ ?
ଆହେ ନନା, ନ ଲେଖିବ କିଛି କିଛି ଯଦି,
କପରି ହେବଟି ବୋଲ ଓଡ଼ିଆ ମାସ୍ୱଦ ?

ଲୌରିଷଣ୍ଡ ନଦୀକୂଳେ ମାଧବଡ଼ାଗ୍ରାମ,
ସେଠାରେ ଶୁଣିଲି ଦିନା ସମର ଇଭ୍ ନାମ ।
କେମନ୍ତ ଇସ୍କୁଲଟାଏ ଦେଇଛି ବସାଇ,
କେତେ ଦେଶୀ ଲୋକ ଯିବେ ଦାନାପାଣି ଖାଇ ।
ଦେଖ ଦେଖ ଅଟି ଗଞ୍ଜାମର ଜମିଦାର,
କାହିଁ ଲୋକ ଅଟି କଲା କାହିଁ ଉପକାର ।

ଧରାକୋଟ ରଜା ଜଣେ ଖୁବ learned,
କରନ୍ତି ସେ ବରଷକୁ ଛଅଶ ଟଙ୍କା paid.
ଦଅନ୍ତି ଇସ୍କୁଲ ପିଲା କଲେଜ ଖରଚା,
ବୃତ୍ତିରୁ ଯାଆନ୍ତି ଖାଇ ଅଧେ ପୁଣି କଞ୍ଚା ।
ଏଭଳ ହେଲା କି ରାଜା ଡୋନେଶନଯାକ,
ଏ ତ ତୁମ୍ଭ ବଡ଼ ଗୋଟେ ରାତର ଖୋରାକ ।

ମଞ୍ଜୁଷା ରାଜାଙ୍କ ନାମ ଶୁଣେ ପରସ୍ପରେ,
ଜାତିଟାଣ ଅଛି କିଛି ତାହାଙ୍କ ଦେହରେ ।
ମାତ୍ର ଦେଖାଗଲା ନାହିଁ କିଛି ତ କାମରେ,
ହେଉ ହେଉ ରହୁଛି ତ ଘମ୍ବଙ୍କ ଚଉରେ ।

ଗଞ୍ଜାମଜିଲାରେ ଢେର ଛନ୍ତି ଜମିଦାର,
ଗୁରୁପାଣିଖିଆ ହାତେ ସବୁ କାରବାର ।
ବେଲେ ହେଲେ ନ କରନ୍ତି ବାହାର ମନରେ,
ଜନ୍ମିଛନ୍ତି ରହୁଛନ୍ତି ଓଡ଼ିଆ କୁଳରେ ।

ହେ ଟିକାଲୀ ଅଧୀଶ୍ୱର କରେଁ ନମସ୍କାର,
ନାଟକରେ ତୁମ୍ଭ ବୁଦ୍ଧି ଖେଳେ ଚମତ୍କାର ।
ସୁରଙ୍ଗୀରୁ ଶୁଣାଗଲା ତାଳ ମାନ ମୂର୍ଚ୍ଛା,
ଆପଣ ରାଗିଣୀ ବେଢି କରିଦେଲେ ଠୁଳ ।
ଲେଖିଯାଅ କେତେଖଣ୍ଡ ନୂତନ ନାଟକ,
ମୋହିତ ହେବେଟି ଶୁଣି ଉତ୍କଳର ଲୋକ ।
ତୁମ୍ଭଙ୍କ ନାଟକମାନ ଯିବ ଦେଶେ ମାତ,
ଦୁର୍ଗନ୍ଧ ଯାତ୍ରା ଦଳ ପଳାଇବେ ଘତ ।

ସତ କଥା ଉତ୍କଳରେ କବ ଛନ୍ଦ ଚୋର,
ଆଗେ ଲେଖ ନାମ ଚନ୍ଦ୍ରାମଣି ଓ ମେଡ଼ବର ।
ଖୁବ ଅଚ୍ଛା କର ଯେବେ କହବ କଲଣ—
କେ ଅଧିକ କିଏ ଊଣା ଯିବ ନାହିଁ ଜଣା ।
କର୍ପା କଷ୍ଟବଷ୍ଟ ଏଟେ କେ ଊଣା ଅଧିକ,
ପଢ଼ି ଦେଖ କାବ୍ୟ ହେଲେ ଧାହତ୍ୟ ଖିପିକ ।
ଖାଇବ ଚତଞ୍ଜ କର୍ପା ବନ୍ଧ ଗଣ୍ଠାଗଣି,
ମୁଁ ତ ବାପା ଏହ କଥା ଯାର ଅଛୁ ମଣି ।

ଓଡ଼ଥ ଦହିଣ ସୀମା ପାରଳାଖିମଣ୍ଡ,
ଧନେ ମାନେ କିଏ ଅଭ୍ଭ ଅଛୁ ତାଙ୍କୁ ବଡ଼ି ?
କହଦ୍ଧ ଗୌରବ ସ୍ଥାନ ନ ଦେଖେଁ ଯେପର,
ଗାଉଥିଲେ କବି ଗୀତ ଯହିଁ ଗୌରବହର ।
ଧନ୍ୟ ହେ ସେକେଣ୍ଡପ୍ରିନସ ଧନ୍ୟ ତୁମ୍ଭ ନାମ,
ବଂଶ ଅନୁରୂପ ଏକା କରଅଛ କାମ ।
କେତେ ଉକାଙ୍କର ଅଛି ଇଂରେଜୀ knowledge.
ନ ବୁଝିବେ very dirty ଓଡ଼ଥ language.
ସତ କଥା ହେଲେ ଏବେ English—educated.
Consequently ଓଡ଼ିଆ study sadly neglected.
ମୁଁ ତ କହୁ ନାହିଁ dirty oriya ପଢ଼ିବାକୁ,
କର୍ପା ଯିବେ ଏହେ ମହାପାପ କରିବାକୁ ।
ମାନ୍ଧ ଘଜଧର୍ମ ଛମ୍ଭ ନ ଯାଅ ପାସୋର,
ଦେଶୀ ଲୋକ ଦେଶୀ ଭଷା ଶିଖିବେ କପର ?
ଉରସି ବୋଲଣ ଯେବେ ତାଙ୍କୁ ଦୁଇ କଥା,
ଖପା ହୋଇ ପିଟିଦେବେ ଠେଙ୍ଗା ଦିଇ ମୋ ମଥା ।

କାହିଁପାଇଁ ମିଛଟାରେ ହେବ ହରବର,
ଅହାର ବେପାର କର ଜାହାଜ ଖବର ।
ଆପଣ ବୃତ୍ତାନ୍ତ କଥା, ସିନା ସେଥିପାଇଁ
ଲୁଚାଇଲ ଗୂଢ଼ଟା କଥା ଶୁଣ ଅଙ୍ଗୀ ନାହିଁ ।
ଦକ୍ଷିଣ ରାଜ୍ୟରେ ମାତୃଭାଷାରକ୍ଷାପାଇଁ
ସମସ୍ତେ ଅଛନ୍ତି ଏକା ତୁମ୍ଭଙ୍କୁ ଅନାଇ ।
ଆମ୍ଭେମାନେ ତୁଷୋଳପଣି କରୁଅଛୁଁ ଆଶା,
ଉନ୍ନତି ଲଭିବ ତୁମ୍ଭ ଯୋଗେ ମାତୃଭାଷା ।
କେତେ ହାତୀ କେତେ ଘୋଡ଼ା ଯାଉଅଛି କଣା,
ବାନ୍ଧି ନେଉଅଛୁ ଥିଲ କେ ବଜାଇ ବୀଣା ।
ଦେଶ ଭାଷା ଉନ୍ନତିରେ ଯାହା କରିଯିବ,
ଯୁଗ ଯୁଗାନ୍ତରେ କୀର୍ତ୍ତି ବାନା ଉଡ଼ୁଥିବ ।
ଟେଲର ତ ଦେଇଥିଲା ଉଡିଆ ଉଡ଼ାଇ,
ଗୌରଚନ୍ଦ୍ର ଗଜପତି ଦେଲେ ଯେ ରଖାଇ ।
ମହାରାଜ ଆପଣଙ୍କ ଏ କଥା ପଦକ,
କରିଥିବ ସବୁଦିନେ ହୃଦରେ ପଦକ ।
ପଶ୍ଚିମରେ ସେଣ୍ଟି, ସ୍କଟ୍, ଦକ୍ଷିଣେ ନଉପ,
ଉତ୍ତରେ ଏ ସବୁ କଥା ମୂଳରୁ ଅପ୍ରିୟ ।
ଏରୂପର ଜଣେ ଯେବେ ଥାଆନ୍ତେ ଉତ୍ତରେ,
ବୁଲୁଥାନ୍ତି ମୁହିଁ ହାତ ପକାଇ ନଗରେ ।

ମେକ୍‌ଡୋନାଲ୍ ସାହେବ ଆଉ ଲର୍ଡ଼ କର୍ଜନ୍‌ସର,
ତୁମ୍ଭ ଦୁଇଜଣ ତୁମ୍ଭେ ଦୁଇଜଣ ସର ।
ଜୁଡ଼ାଇଛ ଯେଉଁ ବାନା ଗଞ୍ଜାମ କଲ୍ଲାରେ ।
ଇତିହାସେ ଲେଖା ହେବ ସୁବର୍ଣ୍ଣ ଅକ୍ଷରେ ।

ଓଡ଼ିଆ ମା ବାପ ଥିଲେ ସେ ଦୁଇ ସାହେବ,
ଚଳି ଯାଇଛନ୍ତି ଛାଡ଼ି ଭୁଲିଲେ କି ହେବ !
ଚନ୍ଦ୍ରାମଙ୍କୁ ଅପିଥିଲେ ଦେବଦୂତ ପ୍ରାୟ,
ଚଳି ଯାଇଛନ୍ତି ଛାଡ଼ି ହାୟ ହାୟ ହାୟ !

ଧନ୍ୟ ହେ ବିକ୍ରମ ଦେଓ ପଣ୍ଡିତରତନ,
ମହାରାଜ ଜୟପୁର ଉତ୍କଳ ଭୂଷଣ ।
ତୁମ୍ଭର କବିତା ରାଧାମାଧବ ନାଟକ,
ପଢ଼ି ଜ୍ଞାନ କଲେ ମୋର ଜୀବନ ସାର୍ଥକ ।
ବିଶାଖାପଟ୍ଟନ ମଧ୍ୟେ ତେଲିଙ୍ଗ ଦେଶରେ
ଛନ୍ତି ଦେଶୀ ଲୋକ କେହ ଜାହାନ୍ତ ପାଶରେ ।
ଓଡ଼ିଆ ପଢ଼ିବା ପାଇଁ ସମର୍ପିଛ ପ୍ରାଣ,
ଧନ୍ୟ ଧନ୍ୟ ତୁମ୍ଭ ମାତୃଭାଷା ପ୍ରତି ଟାଣ ।
ସଂସ୍କୃତ ଉତ୍କଳ ଅନ୍ୟ କରଣ ଆୟାସ
ତିନ ଭାଷା ଭଲରୂପେ କରଛ ଅଭ୍ୟାସ ।
ଆପଣ ବୋଲନ୍ତି ଶୁଣି ଅଛୁ ପରମ୍ପର,
ଅନ୍ୟରୁ ଉତ୍କଳ କାବ୍ୟ ଅଟେ ଶ୍ରେଷ୍ଠତର ।

ତେର ଥର ବସି ବସି ଚିନ୍ତିଲୁଁ ମନରେ,
ସମ୍ବଲପୁରକୁ ଧାଇଁ ଯିବି ଆଉ ଥରେ ।
ମିଶ୍ରଙ୍କ କୋଠାରେ ଯାଇ ପକାଇବି ଡେରା,
ଅତିଥି ସତ୍କାରେ ଅଧାଅଧି ଘର ଘେରା ।
ଖୁବ ଭୋର ଶୀତ—ଶୀତ ଲପଟନ ଟିପ,
ନାନାଜାତି ମିଠା ଲଡୁ ପୂରପୂର ଝାମ୍ପ ।

ରୂପେନ୍ଦ୍ର ବାମଣ ସବୁବେଳେ ପାଖେ ଠିଆ,
ଅଧରାତିଯାଏଁ ଲଗିଅଛି ଖିଅପିଆ ।
ପଢ଼ିଗଲେ ମନେ ହୁଏ ପ୍ରାଣଟା ଆକୁଳ,
ଅନ୍ନପୂର୍ଣ୍ଣା ବୁଢ଼ାଙ୍କ ପେଟଚର୍ଚ୍ଚା ଏକାମୂଳ ।
ମିଶ୍ର ଘରେ ପିଲାଗୁଡ଼ା ଆନନ୍ଦପ୍ରତିମା,
ମୁଖେଁ ଝରେ ଦୟା, ପ୍ରୀତି, ସ୍ନେହ ମଧୁରିମା ।
ଶୁଣୁଁ ସ୍ୱର୍ଗେ ଛନ୍ତି ଦେବକୁମାର କୁମାରୀ,
ଯାଏ ଜଣା ଏ ଗୁଡ଼ିକ ନକଲ ତାହାରି ।

ଦେଖିଲି ଧରଣୀଧର ବାନପ୍ରସ୍ଥାଶ୍ରମ,
ଧନ୍ୟ ଅଧ୍ୟୟନ ଜ୍ଞାନ ଇନ୍ଦ୍ରିୟସଂଯମ ।
ଲାଗି ପଡ଼ିଛନ୍ତି ଧର୍ମପୁସ୍ତକ ଗ୍ରନ୍ଥରେ,
ପରବ୍ରହ୍ମେ ଚିତ୍ତ, ଦେହ ରହିଛି ସଂସାରେ ।

ବରପାଲି ଦେଶେ ଅଛି ଗଙ୍ଗାଧର ମେହେର,
ତାହାର କବିତା ପଢ଼ିଲିଣି ଢେର ଢେର ।
କବିତାଗୁଡ଼ିକ ପଢ଼ି ମନ ମାନ ଯାଏ,
ଆଉ ସେ ଲେଖିବ କିଛି ବାଟ ଚାହିଁ ଥାଏ ।

ବିଜୟ ମଜୁମଦାର ଶୁଣ ମୋର ବାପା,
ଓଡ଼ିଆରେ କିଛି କିଛି କର ଯାଉ ଛପା ।
କେତେବେଳେ ତୁହ ଯେବେ ବଙ୍ଗଳାକୁ ଫେରୁ,
ପୁଅ ଝିଅମାନେ କଲୁ ହୋଇଥିବେ କେରୁ ।

ଲକ୍ଷ୍ମୀନାରାୟଣ ଦେଓ କେସ୍ର ଅଧୀଶ୍ୱର,
ମନ ମାନ ଗଲା ଦେଖି କାର୍ଯ୍ୟଟା ତୁମ୍ଭର ।

ପ୍ରବୀଣ ବୟସ୍ସେ ଯାହା ଲଟିପଡଛନ୍ତି,
ଏପ୍ରକାରେ ହେଲ ମାତୃଭାଷାର ଉନ୍ନତି ।
କବିଶ୍ରେଷ୍ଠ ବୋଲି ଲୋକେ କରନ୍ତି ସମ୍ମାନ,
ସମ୍ମିଳନୀ ମଣ୍ଡପରେ ପାଇଲି ପ୍ରମାଣ ।
କଥାଭାଷା ଗ୍ରାମ୍ୟଶବ୍ଦରୁ ଗଲ ଜାଣି,
ସରଳ ଛନ୍ଦରେ ମିଷ୍ଟଭାଷୀ ଭଲ ଜ୍ଞାନୀ ।

ବାଲିଅବେଢ଼ାରେ ଢେର ପଣ୍ଡିତଙ୍କ ବସା,
ମିଳିଯିବ ଅଣ୍ଟାଖୋଷା ବହୁତ ଭରସା ।
ଭଙ୍ଗାଳି କଙ୍ଗାଳି କେତେ ଫକୀର୍ ଫୁକୁର୍,
ଗ୍ରାମିଗଲେ ଖାଇବାକୁ ପାନ୍ତି ପେଟପୂର୍ ।
କେଉଁରୂପେ ମିଳିଗଲେ ଜନ୍ତୁ ବାଟଗର୍ଡା,
ଅସନ୍ତି ମୁଁ ଦେଖି ତାଙ୍କ ସଭା ଶାସ୍ତ୍ରଚର୍ଚ୍ଚା ।
ବର୍ତ୍ତମାନ ରାସ୍ତ ବାହାଦୂରଙ୍କ ଯୋଗରେ
ଉତ୍କଳ ଜାତିର ଟେକ ରହଇ ଉପରେ ।

ଅହୁରି ବହୁତ ଲୋକେ ଅଛେ ଓଡଶାରେ,
ସେମାନଙ୍କ ନାମ ଲେଖା ନ ଗଲ ଏଠାରେ ।
ଖପା ହୁଅ ନାହିଁ ନାମ ହେଲ ନାହିଁ ଛପା,
ଘରୁ ଖାଇ ପର କାମ କଏ କରେ ବାପା ।
ହରି ହରି ହରି ବୋଲି ସରିଲ ମୋ ଗୀତ,
ଭଲ କୁହ ମନ୍ଦ କୁହ ଯାହା ତୁମ୍ଭ ଚିତ୍ତ ।

ସମାପ୍ତ ।



Printed by V. Kar. The U. S. Press, CuttacK.